"ଅଷ୍ଟମ ଓଡ଼ିଆ ଯୁବଲେଖକ ସମ୍ମେଳନ ସଂଖ୍ୟା

# ଆଶା

ପ୍ରବନ୍ଧ ସଂକଳନ

= ସମ୍ପାଦନା =

ଗୌରୀ ପ୍ରସାଦ ମହାପାତ୍ର
ଭବ ଦାଶ

ସାହାଯ୍ୟ—ପଚିଶ ପଇସା

# ସଂପାଦକୀୟ

## "ସାହିତ୍ୟ ଓ ସମାଜ"

ସମାଜର ସୃଷ୍ଟିରେ ସାହିତ୍ୟର ଭୂମିକା ଅତୁଳନୀୟ । ଆଦିମ ଉଲଗ୍ନ ମାନବ ମୁହଁରେ ଯେତେବେଳେ ଭାଷା ନଥିଲା—ସେ ଠାର ଏବଂ ଶବ୍ଦ ଦ୍ୱାରା ଆପଣା ଭାବର ପର-ପ୍ରକାଶ କରୁଥିଲା । ଜୀବଜଗତର ଶ୍ରେଷ୍ଠତମ ଜୀବ ହିସାବରେ, ମନୁଷ୍ୟ ନିଜର ମାନସିକ ବିମୋନ୍ନତି ଦ୍ୱାରା କଥିତ ଓ ଲିଖିତ ଭାଷାର ଜନ୍ମ ଦେଲା । ବଞ୍ଚିବା ମନୁଷ୍ୟ, ସ୍ୱତନ୍ତ୍ରତା, ଗୋଷ୍ଠୀ ସୁରକ୍ଷା ଓ ପ୍ରଗତି ପାଇଁ ସମାଜର ସୃଷ୍ଟି କଲା । ଅବଶ୍ୟ ଭାଷା ଓ ସମାଜ ମଧ୍ୟରେ କାହାର ସୃଷ୍ଟି ପ୍ରଥମେ ହୋଇଥିଲା, ତାହା ଏଠାରେ ଆଲୋଚ୍ୟ ନୁହେଁ । ଏ' ବିଷୟରେ ଐତିହାସିକମାନେ ମତ ଦେଇପାରନ୍ତି । କିନ୍ତୁ ଉନ୍ନତତର ସମାଜ ସୃଷ୍ଟିରେ ସାହିତ୍ୟର ଭୂମିକା ଅବିସ୍ମରଣୀୟ ଓ ଅତୁଳନୀୟ ।

ସମାଜର ବିଭିନ୍ନ ସ୍ତରରେ ସାହିତ୍ୟ ବିଭିନ୍ନ ଆଭିମୂଖ୍ୟ, ବିଭିନ୍ନ ରୂପ, ରଂଗ, ରସ ନେଇ ଦେଖାଦେଇଛି ସମୟର ତାଳେ ତାଳେ ସମାଜର ଶବ୍ଦ ବଦଳି ଆସିଛି ଏବଂ ସାହିତ୍ୟ ସେଇ ସମାଜର ଚିହ୍ନଗୁଡ଼ିକୁ ସବୁଦିନ ପାଇଁ 'ଫୋଟ' ଉଠାଇ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ସାଇତି ରଖିଛି । ଏଇ ଦୃଷ୍ଟିରେ ସାହିତ୍ୟକୁ ଚିରନ୍ତନ କୁହାଯାଇପାରେ ।

ହୁଏତ ସମାଜର ପ୍ରଥମ ସ୍ତରରେ ଲିପିବଦ୍ଧ ଗୀତ ଓ ଘଣ୍ଟଣ୍ଟାବଳୀକୁ ସାହିତ୍ୟର ସମ୍ମାନ ଦିଆଯାଇଥିଲା । ପରେ ସାହିତ୍ୟ ବ୍ୟକ୍ତିକୁ ଆନନ୍ଦ ଦେବା ପାଇଁ ଉଦ୍ଦିଷ୍ଟ ହେଲା ଏବଂ ଭାଷା ସାହିତ୍ୟର ଏକ ବଳିଷ୍ଠ ଅଂଗ ରୂପେ ପରିଗଣିତ ହେଲା । ସଂସ୍କୃତ ସାହିତ୍ୟ, ଏହାର ଏକ ଉଦାହରଣ । ମଧ୍ୟଯୁଗରେ ପ୍ରେମ ରସକୁ ସାହିତ୍ୟରେ ଉଚ୍ଚତମ ଆସନ ଦିଆଯାଇଥିଲା । ଏଇଭଳି ବିଭିନ୍ନ ସମୟରେ ପରିବର୍ତ୍ତିତ ରୁଚି, ଆଭିମୁଖ୍ୟ ଓ ଆଦୃତତାକୁ ଭିତ୍ତିକରି ସାହିତ୍ୟ ଆଜିର ସମାଜରେ ପଦାର୍ପଣ କରିଛି ।

ଜଣେ କେହି ହୁଏତ କାଲର ସାହିତ୍ୟକୁ ଆଜି ଗ୍ରହଣ ଓ ସ୍ୱୀକାର କରିବାରେ ପଛଘୁଞ୍ଚା ଦେଇ ତାକୁ ଘୃଣା କରେ; ତେବେ ସେ ମନେ ରଖିବା ଉଚିତ ଯେ, ଆଜିର ସାହିତ୍ୟ କାଲି ପୁଣି ପୁରାତନର ରୂପ ନେବ । ଆଜିର ରୁଚି ନିଶ୍ଚିତ ଭାବେ କାଲିକି ପରିବର୍ତ୍ତିତ ହେବ···ଏଥିରେ ସନ୍ଦେହ ନାହିଁ । ଏଣୁ ସାହିତ୍ୟ ଯୁଗୋପଯୋଗୀ ରୁଚି ଓ ସମାଜର ଏକ ଦର୍ପଣ ।

ଆଜିର ସାହିତ୍ୟ କେବଳ ମନୁଷ୍ୟକୁ ଆନନ୍ଦ ଦେବା ପାଇଁ ନୁହେଁ, କିମ୍ବା ଭାଷା ଓ ଅଳଙ୍କାର ସୃଷ୍ଟି ପାଇଁ ସୀମିତ ନୁହେଁ । ଆଜି ସାହିତ୍ୟର ସୀମାରେଖା ଦିଗ୍‌ବଳୟକୁ ଟପି ଯାଇଛି । ସାହିତ୍ୟର ଆଭିମୁଖ୍ୟ ଆକାଶ ପାତାଳ କିମ୍ବା ଗ୍ରହ ଉପଗ୍ରହ ମଧ୍ୟରେ ସୀମାବଦ୍ଧ ନରହି ଶୂନ୍ୟରୁ ମହାଶୂନ୍ୟ ···ସୌର ଜଗତରୁ ଅନ୍ୟ ଗୋଟିଏ ସୌର ଜଗତ ଯାଏଁ ବ୍ୟାପିବାରେ ଲାଗିଛି ।

ବଂଶବାର ସଂଗ୍ରାମ ଭିତରେ ସମାଜର ଯେଉଁ ସମୁଦ୍ର ସ୍ୱର ଉଦ୍‌ବେଳିତ ହେଉଛି, ସେଇ ସ୍ୱର ଆଜ ସାହିତ୍ୟରେ ରୂପ ନେଇ ପାରିଛି ।

ଆଜିର ସାହିତ୍ୟରେ ସମାଜର ବାସ୍ତବତାକୁ ଆଧାର କରି ଅନେକ ଲେଖକ ସାମାଜିକ ବିପ୍ଳବ ଏବଂ ପରିବର୍ତ୍ତନ ପାଇଁ ଅଗ୍ରସର ହେଉଛନ୍ତି । କିନ୍ତୁ ଏଇ 'ବାସ୍ତବିକତା' ଏବଂ 'ବୈପ୍ଳବିକତା' କେବଳ ଯେ ସାହିତ୍ୟର ଆଭିମୁଖ୍ୟ— ଏହା କୁହାଯାଇ ନ ପାରେ ।

ଆଜି ସମାଜର ସ୍ୱରରେ ଯନ୍ତ୍ରଣା ରହିଛି । ବଂଚିବା ପାଇଁ ଉତ୍ତେଜନା ରହିଛି ଆଉ ଉଲଗ୍ନ ହୋଇ ନୃତ୍ୟ କରିବାର ସ୍ପଂଦନ ରହିଛି । ଏଇଭଳି ସମାଜର ବିଭିନ୍ନ ବାସ୍ତବତାକୁ ପ୍ରତିଫଳନ କରି ସାହିତ୍ୟ ଆଜ ସମାଜର ସ୍ୱର ଉଦ୍‌ବେଳନ କରି ଆହ୍ୱାନ ଦେଉଛି···ଆଗକୁ, ଆହୁରି ଆଗକୁ ଅଗ୍ରସର ହେବା ପାଇଁ ! ପରିବର୍ତ୍ତନ ପାଇଁ ଏବଂ ପ୍ରଗତି ପାଇଁ । "ସାହିତ୍ୟ"—ଆଜ କେବଳ କଳ୍ପନା ବହୁଳ ଏବଂ ସ୍ୱପ୍ନିଳ ନ ହୋଇ ବ୍ୟକ୍ତି ମାନସର-ଅନୁଭୂତିକୁ ଓ ସମାଜକୁ ତନ୍ନ ତନ୍ନ କରି ଅଣୁ ପରମାଣୁରେ ବିଶ୍ଳେଷଣ କରିଛି ପଥେ । ସମାଜକୁ ନେଇ ଯେଉଁ ସାହିତ୍ୟ ସୃଷ୍ଟି ହୁଏନାହିଁ, ତାହା ଚିରନ୍ତନ ନୁହେଁ । ସାମାଜିକ ପ୍ରତିଫଳନ ସାହିତ୍ୟକୁ ବଂଚାଇ ରଖେ ।

ରାମାୟଣ, ମହାଭାରତି ବଂଚି ରହିଛି, କାରଣ ସେଇ ସମୟର ସାମାଜିକ, ରାଜନୈତିକ ପ୍ରତିଛବି ତା ଦେହରେ

ପ୍ରତିଫଳିତ ହୋଇ ରହିଛି । ଫକୀର ମୋହନଙ୍କ ସାହିତ୍ୟ ବଂଚନ୍ତି । କାରଣ ସେ ସାହିତ୍ୟରେ ତତ୍କାଳୀନ ସମାଜର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ 'ଫୋଟୋଗ୍ରାଫି' ରହିଛି ତାଂକ ସାହିତ୍ୟ ଠିକ୍ ସେଇଭଳି ତାଂକ ସ୍ୱ ରୁଚି, ଭଂଗୀସ୍ୱ କଳା ସଂସ୍କୃତିକୁ ରୂପବନ୍ତ କରି ରଖିପାରିଛି ।

ଯେଉଁ ଲେଖକ, କବି, ଗାଳ୍ପିକ, ପ୍ରାବନ୍ଧିକ ସମୂହ ରୁଚିକୁ ନିଜ ରୁଚିରେ ମିଶ୍ରିତ କରି ସାହିତ୍ୟ ସୃଷ୍ଟି କରି ପାଇଛନ୍ତି, ସେଇମାନେ ଗୋଟାଏ ଗୋଟାଏ ଯୁଗର ସୃଷ୍ଟି କରି ପାରିଛନ୍ତି । ଓଡ଼ିଆ ସାହିତ୍ୟ—ଏହିଭଳି ଅନେକ ଯୁଗରେ ପଦାର୍ପଣ କରି ଆଜି ଏକ ବୈପ୍ଳବିକ ସ୍ତରରେ ଝଡ଼ଝଂଜା ପୂର୍ଣ୍ଣ ପରିବେଶ ଭିତରେ ଗତି କରୁଛି ।

ଆଜିର, ସାହିତ୍ୟ ଓ ସମାଜ ଦୁଇଟି ସମାନ୍ତରାଳ ସରଳ ରେଖା ନ ହୋଇ ଗୋଟାଏ ବିନ୍ଦୁରେ ମିଳିତ ହେବା ପଥେ ଅଗ୍ରସର । ଅତଏବ ଆଜିର ଏଇ "ଓଡ଼ିଆ ଯୁବ ଲେଖକ ସମ୍ମେଳନ"ର ଅବସରରେ ପ୍ରତ୍ୟେକ ଲେଖକ, କବି, ଗାଳ୍ପିକ, ପ୍ରାବନ୍ଧିକ, ନାଟ୍ୟକାର ଓ ବୁଦ୍ଧିଜୀବୀ ସେଇ ବିନ୍ଦୁଟିର ଆବିଷ୍କାର କିମ୍ବା ଉଦ୍ଭାବନ କରିବା ବିଧେୟ···

(ବାରିପଦା ଓଡ଼ିଆ ଯୁବଲେଖକ ସମ୍ମେଳନର ଉଦ୍ଦେଶ୍ୟରେ)

**ଗୌରୀପ୍ରସାଦ ମହାପାତ୍ର**
ମୁଖ୍ୟ ସମ୍ପାଦକ ।

# ପର୍ଯ୍ୟାଲୋଚନା  ମଣିଷ ମନର

**ଏକାଦଶୀ ପ୍ରସାଦ ବୋଇତାଇ**

ଏଇମନ ବୃନ୍ଦାବନ, ଏଇମନ କେବେ ପୁଣି ନରକ ସମାନ । ମନ ଏକ ସ୍ୱୟଂଗୃଳିତ ଯନ୍ତ୍ର ଯାହାକ ଖାମଖିଆଲର ମଧୁର ସମନ୍ୱୟ । ଏହି ଚଞ୍ଚଳ ମନର ରୂପରେଖ ନିୟନ୍ତ୍ରଣ କରିବା ବା କ୍ଷଣ ପରିବର୍ତ୍ତନଶୀଳ ମନ ମଧ୍ୟରେ ପ୍ରବେଶ କରିବା କେବଳ ଆୟାସସାଧ୍ୟ ନୁହେଁ ବେଳେ ବେଳେ ଅସମ୍ଭବ ମଧ୍ୟ । ଆଫ୍ରିକାର ଘନଘୋର ଅରଣ୍ୟ ମଧ୍ୟରେ ପ୍ରବେଶ କରିବା ହୁଏତ ସମ୍ଭବ ହୋଇପାରେ ଯେହେତୁ ଏହାର ପ୍ରକୃତି ସର୍ବଦା ସମାନ । କିନ୍ତୁ ମଣିଷର ମନ ମଧ୍ୟରେ ଥିବା ଭୟଙ୍କର ଅରଣ୍ୟ ମଧ୍ୟରେ ପ୍ରବେଶ କରିବା ଅନେକ ସମୟରେ ପ୍ରାଣଘାତକ ହୋଇପଡ଼େ ଯେହେତୁ ପ୍ରତି ମୁହୂର୍ତ୍ତରେ ସେ ତାର ରୂପ ପରିବର୍ତ୍ତନ କରେ । ମଣିଷ ମନର ଚକ୍ରବ୍ୟୂହ ଭେଦ କରିବା ସହଜ ମନେ ହେଲେବି ସମ୍ଭବ ନୁହେଁ । ସେଇଥି ପାଇଁ ଆଜି ଆମେ ଦେଖୁ ବିଜ୍ଞାନ ତା'ର ଉନ୍ନତି ପଥରେ ଯେତେ ଅଗ୍ରସର ହୋଇଥିଲେ ବି ମଣିଷ ମନର ପ୍ରକୃତ ରୂପ ସ୍ଥିର କରିବା ପାଇଁ ଅକ୍ଷମ ହୋଇଛି । ବହୁ ଚିନ୍ତାଶୀଳ ବ୍ୟକ୍ତି ଏ ଦିଗରେ ଆଗେଇବା ପାଇଁ ଯେ ଚେଷ୍ଟା ନ କରିଛନ୍ତି ତା ନୁହେଁ କିନ୍ତୁ ସମସ୍ତେ ତାଙ୍କ ନିଜ ମନର ଆବେଷ୍ଟନୀ ଭିତରେ ଧନ୍ଦି ହୋଇ ପରିଶେଷରେ ଗୋଲକଧନ୍ଦାରେ ହିଁ ଘୂରିବା ସାର ହୋଇଛି ।

କଥାଟା ହେଉଛି ଆମେ ଯେତେବେଳେ କୌଣସି କାମ କରୁ ବା କହୁ, ସେ ବିଷୟରେ ସଠିକ ଭାବରେ କିଛି ଚିନ୍ତା ନ କରି

କରୁ ବା କହୁ ଯାହାର ଫଳ ଆମେ ନିଜେ ଭୋଗୁ ବା ଅନ୍ୟ କାହାକୁ ଭୋଗିବାକୁ ବାଧ୍ୟ କରାଉ । ସମୟେ ସମୟେ ଆମେ ଯେତେ ଚେଷ୍ଟା କଲେବି ନିଜକୁ ଅନ୍ୟ ପାଖରେ ବୁଝାଇ ପାରୁନା କିମ୍ବା ଜାଣି ଶୁଣି ଅନ୍ୟମାନେ ଆମକୁ ବୁଝିବାକୁ ଚେଷ୍ଟା କରନ୍ତି ନାହିଁ । ସେଇଥି ପାଇଁ ଆମେ ସମସ୍ତେ ଅନେକ କ୍ଷେତ୍ରରେ ଦୁର୍ବୋଧ୍ୟ କବିତା ପରି ଅବୁଝା ରହିଯାଉ । ବହୁ ସମୟରେ ଆମର ଅଭିମାନକୁ ଅନ୍ୟମାନେ ରାଗ ବୋଲି ଧରି ନିଅନ୍ତି । ଖାଲି ଆଖିକୁ ଦେଖାଯାଏ ଯେ ଆମେମାନେ ପରସ୍ପରର ଖୁବ୍ ନିକଟରେ ଅଛୁ । କିନ୍ତୁ ପ୍ରକୃତରେ ଆମେ ମାନସିକ ସ୍ତରରେ ପରସ୍ପରଠାରୁ ଆଖି ନ ପାଇଲା ଭଳି ଦୂରରେ ଥାଉ । ମନ୍ଦିରକୁ ଯାଇ ବିଗ୍ରହ ପୂଜା କଲାବେଳେ ଆମେ ଯେମିତି ନିଜ ମନକୁ ବୁଝାଇବା ପାଇଁ ନିଜକୁ କହୁଥିଲେ ଆମେ ଭଗବାନଙ୍କ ପାଖରେ ପହଞ୍ଚି ଯାଇଛୁ । କିନ୍ତୁ ସତରେ କ'ଣ ସେଇଆ ? ଅନ୍ୟ ପକ୍ଷରେ, ଆମେ ପରସ୍ପର ଯେତେ ପାଖାପାଖି ହେଉ ପରସ୍ପର ମନର ବ୍ୟବଧାନ ଅନେକ ସମୟରେ ସେତେ ଅଧିକ ବଢ଼ିଯାଏ ସିନା, କମେନି । ଖୁବ୍ ଦୂରକୁ ଲମ୍ବି ଯାଇଥିବା କେତେଗୁଡ଼ିଏ ସମାନ୍ତର ସରଳ ରେଖାକୁ ଲକ୍ଷ୍ୟ କଲେ ମନେହୁଏ ସତେ ଯେମିତି ସେଗୁଡ଼ିକ କୌଣସି ଏକ ନିର୍ଦ୍ଦିଷ୍ଟ ବିନ୍ଦୁରେ ମିଳିତ ହୋଇଛନ୍ତି । କିନ୍ତୁ ସେଇ ରେଖା ଗୁଡ଼ିକର ଅନୁସରଣ କଲେ ଆମେ ଏଇ ସିଦ୍ଧାନ୍ତରେ ପହଞ୍ଚୁ ଯେ ସେଗୁଡ଼ିକ ପ୍ରକୃତରେ ପରସ୍ପର ସହିତ ମିଳିତ ନହୋଇ ସମାନ୍ତର ହୋଇ ରହିଛନ୍ତି । ଠିକ୍ ସେହିପରି ଆପାତତଃ କେତେକ କ୍ଷେତ୍ରରେ କେତେଗୁଡ଼ିଏ ମନର ଏକୀକରଣ ଅନୁମାନ କରି ଯାଉଥିଲେ ମଧ୍ୟ ସେଗୁଡ଼ିକ ପ୍ରକୃତରେ ନିଜ ନିଜର ସ୍ଥିତିରେ ପରସ୍ପରଠାରୁ ପୃଥକ । ମନେହୁଏ ଆମେ ସମସ୍ତେ ଏକ ଏକ ନିଃସଙ୍ଗ ଦ୍ୱୀପ ଶିଶୁ

ଗାଢ଼ ଅନ୍ଧକାର ମଧ୍ୟରେ ଗୁରୁଣ୍ଡି ଗୁରୁଣ୍ଡି କ'ଣ ଗୁଡ଼ାଏ ଖୋଜୁଛୁ କିନ୍ତୁ ପାଉନୁ । କହିବା ବାହୁଲ୍ୟ ଯେ ଆମେ ଯାହା ଖୋଜୁଛୁ ତାହା ପାଉନୁ ଆଉ ଯାହା ପାଉଛୁ ତାକୁ ସାଇତି ରଖି ପାରୁନୁ । ମନଧାରୀ ମଣିଷ ବର୍ଷ ବର୍ଷ ଧରି ଏକତ୍ର ବସବାସ କରୁଥିଲେ ମଧ୍ଯ କେହି କାହାରିକୁ ପ୍ରକୃତରେ ଚହ୍ନନ୍ତି ନାହିଁ, ଜାଣନ୍ତି ନାହିଁ । ମାନସିକ ସ୍ତରରେ ପ୍ରତ୍ୟେକ ପ୍ରତ୍ୟେକଙ୍କ ପାଖରେ ସମ୍ପୂର୍ଣ୍ଣ ଭାବରେ ଅପରିଚିତ, ଅଜ୍ଞାତ କୁଳଶୀଳ । ଆଉ ସେଇଥି ପାଇଁ ଆମେ ଆମ ମନ ଭିତରେ ଅନ୍ୟକୁ ସ୍ଥାନ ଦେଇ ପାରୁନା ବା ଅନ୍ୟର ମନରେ ନିଜର ଆସ୍ଥାନ ଜମେଇ ପାରୁନା । ଆମେ ସମସ୍ତେ ଅଜ୍ଞ ବୋଲି ମନେ ହୁଏ । ଆମେ କିଏ, କଣ, କାହିଁକି କିଛି ବୋଲି କିଛି ଜାଣୁନା ଅଥଚ ଆମେ ଦୃଢ଼ ଭାବରେ ମୁକ୍ତ କଣ୍ଠରେ ଘୋଷଣା କରୁ ଯେ ଆମେ ପୃଥିବୀର ଶ୍ରେଷ୍ଠତମ ଜୀବ 'ମଣିଷ', ମନଧାରୀ ଆମ ମନର ପ୍ରକୃତି ହେଉଛି ନିଜର ଦୋଷ ଦୁର୍ବଳତା ପ୍ରତି ଆଖି ବନ୍ଦ କରି ନିଜର ନିର୍କତର୍କ ଅନ୍ୟ ଉପରକୁ ଫିଙ୍ଗି ଦେଇ ଅନ୍ୟମାନଙ୍କର ଦୋଷ ଆଡ଼କୁ ଜକଜକ କରି ଆଖି ତରାଟି ରହିବା, ନିଜର ଅପରାଧ ପାଇଁ ନିଜକୁ ହଜାର ବାର କ୍ଷମା ଦେବା ଅଥଚ ଅନ୍ୟର ଅପରାଧ ପାଇଁ ଅନ୍ୟକୁ ଥରେ ମାତ୍ର କ୍ଷମା ନଦେବା । ଆମେ ମନେକରୁ ଏ ଦୁନିଆରେ ଆମକୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ଅପରାଧୀ ଆଉ ସେଇଥି ପାଇଁ ଦଣ୍ଡନୀୟ ଆଉ ଦଣ୍ଡ ବିଧାନ କରିବାର ଶକ୍ତି ଆମ ନିଜଠାରେ ହିଁ ନ୍ୟସ୍ତ କରା ଯାଇଛି । ଆମେହିଁ କେବଳ ରୂପ ଯୌବନ ସମ୍ପନ୍ନ, ସବୁଠୁ ଅଧିକ ବୁଦ୍ଧିମାନ ଓ ଯଶସ୍ୱୀ । ଆମ ବ୍ୟତୀତ ଏ ଜଗତ୍‌ର ଆଉ କେହି ବଡ଼ ନାହାନ୍ତି । ବିଧାତା ଆମ ନିଜକୁ ତିଆରି କଲାବେଳେ ତା'ର ସମସ୍ତ କଳାକୌଶଳ ବିଦ୍ୟା ଖଟେଇ ଆମଠି କେବଳ ତାର ଶେଷ ତୂଳିକା

ପ୍ରୟୋଗ କରିଛନ୍ତି । କିନ୍ତୁ ଥରେ ଯଦି ଆମେ ସମୁଦ୍ର କୂଳରେ ଠିଆ ହୋଇ ସମୁଦ୍ରର ବ୍ୟାପ୍ତି ଓ ବିଶାଳତା ବିଷୟ ଚିନ୍ତା କରୁ ମନକୁ ମନ ଆମେ ଗୋଟିଏ ଗୋଟିଏ କ୍ଷୁଦ୍ର ଜଳ ବିନ୍ଦୁରେ ପରିଣତ ହୋଇ ସମୁଦ୍ର ଗର୍ଭରେ ନିଜର ସତ୍ତା ହରେଇ ବସୁ । ଆମ ଆଖି ଆଗରେ ଦେଖି ଶହ ଶହ ପ୍ରତାପଶାଳୀ ନଦନଦୀ ଗୁଡ଼ିକ ବଡ଼ ବିସ୍ମୟ ଭାବରେ ତାଙ୍କର ସ୍ୱାତନ୍ତ୍ର୍ୟ ହରାଇ ସମୁଦ୍ର ଦେହରେ ଲୀନ ହୋଇ ଯା'ନ୍ତି ଆଉ ଆମେତ ଛାର ଜଳବିନ୍ଦୁ ।

ଆମେ ଅନେକ ସମୟରେ କାନ୍ଦୁ । ଦୁଃଖକୁ ଲାଘବ କରିବା ପାଇଁ ଆଖିରୁ ଲୁହ ଗଡ଼ାଉ । କିନ୍ତୁ ମଣିଷ ମନରେ ଏମିତି ଅନେକ ପ୍ରକାର ଦୁଃଖ ଅଛି ଯାହାପାଇଁ କାନ୍ଦି ହୁଏନା, ଲୁହ ଗଡ଼ାଇବା ଦ୍ୱାରା ସେ ଦୁଃଖକୁ ଲାଘବ କରି ହୁଏନା । ଅନେକ କାନ୍ଦ ଅଛି ଯେଉଁଥିରେ ଲୁହ ବୁହେନା ଯେମିତି ଅନେକ ନିଆଁ ଅଛି ଯାହା ହୁତୁ ହୁତୁ ହୋଇ ଜଳେନା, କୁହୁଳି କୁହୁଳି ଧୂଆଁ ହୁଏ । ଦୃଷ୍ଟି ଗୋଚର କଷ୍ଟ ଦିଏ । ଯେଉଁ କଷ୍ଟ ସହି ହୁଏନା କି ରହିବି ହୁଏନା ସତରେ, ମଣିଷର ମନଟା ଏମିତି ଗୋଟାଏ ଉପାଦାନରେ ତିଆରି ଯାହାକି ନିଆଁରେ ପୋଡ଼େନା, ପାଣିରେ ବୁଡ଼େନା କିମ୍ବା କୌଣସି ଅସ୍ତ୍ରରେ ମଧ୍ୟ ବିଦ୍ଧ କରି ହୁଏନା । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ଏଇ ମନ ବେଳେ ବେଳେ କଞ୍ଚା ହାଣ୍ଡି ବା ଲୁଣ ପରି ମିଳେଇ-ଯାଏ । ଏଇଥି ପାଇଁ ମନଟା ଯଦିଓ ଏକାନ୍ତ ଭାବରେ ଆମ ନିଜର ତଥାପି ତାକୁ ନିୟନ୍ତ୍ରଣ କରି ନିଜ ଆୟତ୍ତରେ ରଖିବା ଭାରି କଷ୍ଟ । ଆମ ଅତି ନିଜର ମନ ଉପରେ ଅନେକ ସମୟରେ ଆମେ କ୍ଷମତା ଜାହିର କରିପାରୁନା । ଏହା ଏକ ସ୍ୱୟଂଚାଳିତ ଯନ୍ତ୍ର । ତା'ର ନିୟନ୍ତ୍ରଣ ତା ନିଜ ଉପରେହିଁ ନିର୍ଭର କରେ । ଅଦ୍ଭୁତ ।

ସବୁବେଳେ ସବୁ କାମରେ କିପରି ଆମେ ସଫଳ କାମ ହେଉ ଏହାହିଁ ଆମର ମନ । କିନ୍ତୁ କୌଣସି କାମରେ ପ୍ରତିଷ୍ଠା ପ୍ରାପ୍ତ ହେବାକୁ ହେଲେ ଯେ ନିଜର ଆତ୍ମୋତ୍ସର୍ଗ ଦରକାର ସେକଥା ଆମେ ପୂରାପୂରି ଭୁଲିଯାଉ । ଆମେ ଆତ୍ମ ସମର୍ପଣ କରି ଜାଣୁନା, ନିଜକୁ ହଜେଇ ଦେଇ ଜାଣୁନା, ନିଜର ସ୍ଥିତିକୁ ଭୁଲିଯାଇ ପାରୁନା କିମ୍ବା ଆପଣା ସତ୍ତ୍ୱକୁ ଲିଭେଇ ଦେଇ ଶିଖୁନା । ଆମର ଅହଂଭାବ ଅଧିକାଂଶ କ୍ଷେତ୍ରରେ ଆମ ସଫଳତାର ପଥରୋଧ କରେ । ଲଜ୍ଜା, ଭୟ, ଆଶଙ୍କା ଆମର ପାଖଛଡ଼ା ହୁଅନ୍ତି ନାହିଁ । ଆମେ ଯାହା କରିବାକୁ ଚାହୁଁ ତାହା ଆମେ ଦୃଢ଼ ସ୍ୱରରେ ଖୋଲାଖୋଲି ଭାବରେ ପ୍ରକାଶ କରିବାର ସାହସ ସଞ୍ଚୟ କରି ପାରୁନା । ଆଉ ସେଇଥି ପାଇଁ ଆମେ କୌଣସି କାର୍ଯ୍ୟରେ ପ୍ରକୃତ ପକ୍ଷରେ ସଫଳ କାମ ହୋଇ ପାରୁନା । ସେଇ ଗୋପାଙ୍ଗନାମାନେ ଧନ୍ୟ ଯେଉଁମାନେ ନିଜକୁ ହଜେଇ ଦେଇ ପାରିଲେ । ଲଜ୍ଜା, ଭୟ ଓ ଆଶଙ୍କା ତ୍ୟାଗ କରି ବଂଶୀ ସ୍ୱରର ଅନୁଧାବନ କଲେ । ବସ୍ତ୍ର ହରଣ ବେଳେ ନିଜର ଶେଷ ଲଜ୍ଜା ଟିକକ ତ୍ୟାଗ କରି ସମ୍ପୂର୍ଣ୍ଣ ଉଲଗ୍ନ ଅବସ୍ଥାରେ ଦୁଇହାତ ଟେକି ବସ୍ତ୍ରପାଇଁ କାଳିଆକୁ ଅନୁନୟ କଲେ । ନିଜକୁ ଭୁଲି ଆତ୍ମ ସମର୍ପଣ କଲେ ଓ ତାହାଦ୍ୱାରା କୃଷ୍ଣପ୍ରାପ୍ତ ହେଲେ । ଆମେ ସମସ୍ତେ ଏକ ଏକ ହିଂଶୁକ । ନା ନିଜକୁ ହଜେଇ ଦେଇ ଶିଖିଛୁ ନା ନିଜର ଅହମିକାକୁ ବଜାୟ ରଖି ପାରୁଛୁ । ଅନ୍ୟଠି ଆମେ ଆମର ପ୍ରତିବିମ୍ବ ଦେଖି ପାରୁନା କିମ୍ବା ନିଜ ଭିତରେ ଥରଜ ପାଇଁ ଆତ୍ମନିଯୁକ୍ତ ହୋଇ ପାରୁନା । ଅନ୍ୟକୁ ଦେଖାଉଥିବା ଆମ ମନର ଚିତ୍ରପଟ ଓ ନିଜ ପାଖରେ ଥିବା ନିଜ ମନର ଚିତ୍ରପଟ ମଧ୍ୟରେ ସମତା ରକ୍ଷା କରି ପାରୁନା । ଅନ୍ତଃଗୋପନରେ ନିଜାଂଚନରେ ଯେତେବେଳେ ଆମେ ନିଜ

ମନର ଚିତ୍ରପଟ ଦେଖି ସେତେବେଳେ ଖୁବ୍ ବେଦମ୍ ହୋଇ ହସୁ ଓ ମନ ପୂରେଇ ଖୁସି ହେଉ ଯେ ଆମେ କିପରି ଅନ୍ୟମାନଙ୍କୁ ଆମ ମନର ଭୁଲ ଚିତ୍ରପଟଟି ଦେଖାଇ ସେମାନଙ୍କୁ ବୋକା ବନେଇ ଦେଇଛୁ । କିନ୍ତୁ ତା' ଦ୍ୱାରା ଯେ ଆମେ ନିଜକୁ ନିଜ ପାଖରେ ଛଳନା କରୁ ସେକଥା ଆମେ ଭୁଲରେ ବି ଜାଣି ପାରୁନା । ସମୟ ଆସେ ଯେତେବେଳେ ଆମେ କାପୁରୁଷ ବୋଲି ପ୍ରମାଣିତ ହେଉ । ଅସଲ କଥା ହେଉଛି ନିଜର ଚିନ୍ତାଧାରାକୁ ଧରି ତା ପଛରେ ଲାଗି ଲାଗି କୌଣସି ଏକ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ସାହସ ଆମ କାହାରି ନାହିଁ ।

ମଣିଷ ମନ ସବୁବେଳେ ନୂତନତାର ଅନ୍ୱେଷଣରେ ବ୍ୟସ୍ତ । କିନ୍ତୁ ଏଇ ନୂତନତା ଶବ୍ଦଟାର ଅର୍ଥ କ'ଣ ? ଆଜି ଯେ ନୂଆ କାଲି ସେ ପୁରୁଣା, କାଲି ଯେ ପୁରୁଣା ଆଉ କିଛି ଦିନ ପରେ ତାହା ପୁଣି ନୂଆ ରୂପେ ପରିଗଣିତ ହେବ । ମଣିଷର ମନ କିନ୍ତୁ ଗୃହେ ସେଇ ଜିନିଷ ଯାହାକି କେବେ ପୁରୁଣା ହେବନି, ହୋଇ ପାରେନା । ସେ ହେଉଛି ମୃତ୍ୟୁ । ମୃତ୍ୟୁର ପୁନରାବୃତ୍ତି କେବେ ହୁଏନା । ଯେ ଥରେ ମରିଗଲା ସେ ସେଇ ଜୀବନଟା ପାଇଁ ସବୁଦିନ ପାଇଁ ମୃତ୍ୟୁ ଜିନିଷଟା ପାଇଗଲା । ନୂତନତାର ଅନୁସନ୍ଧାନରେ ଆମେ ପ୍ରକୃତରେ ଏଇ ମୃତ୍ୟୁ ରୂପକ ନୂତନତାରେ ହିଁ ସନ୍ତୁଷ୍ଟ ହେଉ । ତାହାହେଲେ ଆମେ କଣ ସମସ୍ତେ ମରିବାକୁ ଚାହୁଁ ? ଏ ପ୍ରଶ୍ନ ଯଦି ପଚରାଯାଏ ତେବେ ସମସ୍ତେ ନୀରବ ରହିବେ । ସତରେ କି ବିଡ଼ମ୍ବନା ! ଆମେ ମରିବାକୁ ଚାହୁଁ ଅଥଚ ମନଖୋଲି କହିବାକୁ ନାରାଜ । ମୋଟକଥା ହେଲା ମଣିଷର ମନ ସବୁବେଳେ ଛଦ୍ମବେଶରେ ରହିବାକୁ ଭଲପାଏ । ନିଜର ପ୍ରକୃତ ରୂପ ନେଇ ପ୍ରକାଶିତ ହେବାକୁ

ଅଧିକାଂଶ କ୍ଷେତ୍ରରେ ସେ ନାସ୍ତିକ । ଆଜି ସେଇଥି ପାଇଁ ଆମେ ନିଜକୁ ଏତେ ଅସହାୟ ମନେ କରୁ ଯେଉଁଟା କି ଆମର ସବୁଠାରୁ ବଡ଼ ଦୁର୍ବଳତା । ଏ ଦୁର୍ବଳତା ଆମେ କେବେ ଛାଡ଼ିବା ? କେବେ ଆମେ ସମସ୍ତେ ଲଙ୍ଗଳା ମନ ନେଇ ପୁଣି ଜେଲଠାରୁ ଆମର ନୂତନ ଜୀବନ ଯାତ୍ରା ଆରମ୍ଭ କରିବା ? କେବେ ? ଛଳନା ମୁକ୍ତ ହୋଇ ଗୋଟିଏ ଗୋଟିଏ ଅବୋଧ ଶିଶୁ ପରି ବଞ୍ଚି ରହିବାର ପଦ୍ଧତି କେବେ ଆମେ ଉଦ୍ଭାବନ କରିବା ? କେତେ ଦୂର ସେଇ ନୀଳ ସ୍ୱପ୍ନର ଦେଶ ? ଛନ୍ଦ ମୁକ୍ତ ଭାବରେ କେଉଁଦିନ ଆମେ ନାଚ ଶିଖିବା ? କେଉଁଦିନ ଆମେ ଛଳନାର ମୁଖା ତଳୁ ଆମର ପ୍ରକୃତ ସ୍ୱରୂପକୁ ସମସ୍ତଙ୍କ ଆଖି ସାମ୍ନାରେ ପ୍ରକାଶ କରିବା ? ସେ ସୁଦିନ ଆଉ କେତେ ବାଟ ? ଅପେକ୍ଷା କରି କରି ଖୁବ୍ ହାଲିଆ ଲାଗିଲାଣି । ଆଉ ପାରି ହେଉ ନାହିଁ ।



# ଯୁବଗୋଷ୍ଠୀ ଓ ପ୍ରଗତି ସାହିତ୍ୟ

ଶ୍ରୀ ବସନ୍ତକୁମାର ସାମଲ

ବର୍ତ୍ତମାନ ଓଡ଼ିଆ କବିତା କ୍ଷେତ୍ରରେ ଏକ ପରିବର୍ତ୍ତିତ ଦ୍ରୁତ ସ୍ୱର ଶୁଣା ଯାଉଛି । ଓଡ଼ିଶାର ବିଭିନ୍ନ ଅଞ୍ଚଳ ଗୋଷ୍ଠିଗତ ଚେତନାରେ ଉଦ୍‌ବୁଦ୍ଧ ହୋଇ ଏ ତରୁଣ ଗୋଷ୍ଠୀ ତାର କୋଷ୍ଠୀ ନିର୍ମାଣରେ ବଦ୍ଧ ପରିକର । କାରଣ କବିତା ରାଜ୍ୟରେ ଯେଉଁ ପରମ୍ପରା ସୃଷ୍ଟି ହେବାକୁ ଯାଉଛି—ସେ ପରମ୍ପରା ପ୍ରତି ଆନୁଗତ୍ୟ ପ୍ରକାଶ ନକରି ଯୁବଗୋଷ୍ଠୀ ତାର ଆତ୍ମ ପ୍ରକାଶର ନୂତନ ପଥ ଆବିଷ୍କାର କରିବାରେ ବ୍ୟସ୍ତ । କାରଣ ତାର ଚତୁପାର୍ଶ୍ୱରେ ରାଜନୀତିର ବିଫଳ ସ୍ୱପ୍ନ, ମାନବବାଦର ବିପୁଳ ପରାଜୟ, ଧର୍ମନୀତି ଅବିଶ୍ୱାସ, ନୈତିକ ଅଧଃପତନର ମାଦଳା ସୁର ବ୍ୟାଧିଗ୍ରସ୍ତ ସମାଜରେ ଅସୁସ୍ଥ ବାତାବରଣ ସୃଷ୍ଟି କରିଛି ଏବଂ ରକ୍ତାକ୍ତ କରିବାରେ ଲାଗିଛି । ବ୍ୟକ୍ତି ମାନସ ଆଜି ଅଧିକ ପୀଡ଼ିତ ଓ ଜଡ଼ତାର ମୋହରୁ ମୁକ୍ତିପ୍ରାର୍ଥୀ । ସେଥିପାଇଁ ସେ ଅବୁଝା, ଅଜବ, ଅବଧୂତ ଯାହା କୁହାଯାଇ ପାରେ । ତାହେଲେ ଯୁବମାନସ ଗୋଷ୍ଠୀମୁଖୀ କାହିଁକି ? ଏଇ ଗୋଷ୍ଠୀଗତ ଚେତନା କ'ଣ ନୂତନ ବା ସାମ୍ପ୍ରତିକ ? ସମ୍ଭବତଃ ଆଜି ତା'ର ବିଶ୍ୱାସ ବ୍ୟକ୍ତିରୁ ଗୋଷ୍ଠୀ — ଗୋଷ୍ଠୀରୁ ବିଶ୍ୱମାନସକୁ ସ୍ପର୍ଶ କରି ପାରିବ ସେ । ତେବେ ସେଇ ନିର୍ଦ୍ଦିଷ୍ଟ ଧାରଣା କଣ ? — ଯାହାର ମାଧ୍ୟମ ଦେଇ ତରୁଣ ଗୋଷ୍ଠୀ ତା'ର ସ୍ୱାତନ୍ତ୍ର୍ୟ ରକ୍ଷା କରି ପାରିବ ଓ ସାବଲୀଳ ଆତ୍ମ ପ୍ରକାଶ କରିପାରିବ । ସେଇ ବାସ୍ତବ ସତ୍ୟର ମୌଳିକ ମୂଲ୍ୟାୟନ ଓ ପ୍ରତିଷ୍ଠା କପରି ସମ୍ଭବ ହେବ । ସେଇ ଅବୁଝା ଅମଣା

ମଣିଷର ଅବଚେତନ ଓ ଚେତନା ରାଜ୍ୟରେ କପରି ଆଲୋଡ଼ନ ସୃଷ୍ଟି କରିପିବ — ତାହାହିଁ ସମସ୍ୟା ହୋଇ ଦେଖାଦେଉଛି । ଏଣୁ ନୂତନ ବିଶ୍ୱାସ ଉପରେ କବିତାର ରାଗସତ୍ତା ପ୍ରସ୍ତୁତ କରିବାକୁ ସେ ବଦ୍ଧପରିକର । ତଥାକଥିତ ଚତମୁଗର ସ୍ରୋତ କ୍ରମଶଃ ଆବଦ୍ଧ ହୋଇ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରିଛି — ସେ ପ୍ରତିକ୍ରିୟାରୁ ମୁକ୍ତି ଲାଭ ପାଇଁ ଅଥବା ସେ ପରମ୍ପରାରୁ ଆତ୍ମ ନିର୍ବାସନ ପାଇଁ ଅବା ଗଣ ଚେତନାକୁ ଉଦ୍‌ବୁଦ୍ଧ କରିବା ପାଇଁ—ଆଗାମୀ ଏକ ସୂର୍ଯ୍ୟର ସ୍ୱପ୍ନ ଦେଖି ନାହାନ୍ତି—ତାହାର ବନ୍ଦନା ବା ସମ୍ବର୍ଦ୍ଧନା ପାଇଁ ସେମାନେ ଜାଗ୍ରତ ହେବାକୁ ଚାହାନ୍ତି, ବୋଲାଇବାକୁ ଚାହାନ୍ତି ପ୍ରଗତିଶୀଳ । ଅଶେଷ ରାଜନୈତିକ ବର୍ବରତା ଅର୍ଥନୈତିକ ଅସାମ୍ୟ ଓ ସାମାଜିକ ଅସ୍ଥିରତା ଦେଶର ବୁଦ୍ଧିଜୀବୀ ଓ ସାଧାରଣ ଜନତାର ଚିନ୍ତା ଚେତନାରେ ଶିଥିଳତା ଆଣି ଥିବାର ଲକ୍ଷ୍ୟ କରି ତା ବିପକ୍ଷରେ ବିଧିବଦ୍ଧ ଆଲୋଡ଼ନ ସୃଷ୍ଟି କରିବାରେ ଓ ପରିବର୍ତ୍ତନ ଆଣିବାରେ ଓ ଗତିଶୀଳତାର ସୂକ୍ଷ୍ମ ସତ୍ୟ ଉପରେ ନୂତନ ପରମ୍ପରା ସୃଷ୍ଟି କରିବାକୁ ଏକ ଅଦ୍‌ଭୁତ ରିଆକ୍ ସୃଷ୍ଟି କରିବା ଦିଗରେ ଯୁବମାନସ ଅନ୍ୱେଷଣ ରତ ହେବା ସ୍ୱାଭାବିକ ମନେ ହୋଇଛି ।

ଯେଉଁଠି ଶକ୍ତି ଅଛି — ସେଠି ସୃଜନତାର ବିଶ୍ୱାସ ରହିବ । ସେଇ ବିଶ୍ୱାସକୁ ସମ୍ବଳ କରି ପ୍ରଜ୍ଞାର ଅନୁଭୂତିଶାଳର ସଜୀବ ସାହିତ୍ୟ ଶିଶୁକୁ ଦେଇ ଗଣ ସାମନାରେ ନାମକରଣ କରିବା ଓ ଆଗାମୀ ଯୁଗ ଉପରେ ତାର ଭବିଷ୍ୟତକୁ ଆଶା ଓ ବିଶ୍ୱାସ ଉପରେ ପ୍ରତିଷ୍ଠା କରି ଆଗେଇ ଯିବା ଓ ସେଠାରେ ସୃଷ୍ଟି ସାହିତ୍ୟ ପ୍ରଗୃର ଧର୍ମୀ ହେଲେ ମଧ୍ୟ ଚିନ୍ତା ନକରିବା ଆଜ ଗୋଷ୍ଠୀ ସାହିତ୍ୟର ମୂଳଲକ୍ଷ୍ୟ

ହେବା ଉଚିତ ହେବ । ଆନ୍ତର୍ଜାତିକ ଜୀବନର ଦୁଃଖ ଦୁର୍ଦ୍ଦଶା କ୍ଷୁଧା ଓ ଶୋଷଣରୁ ମୁକ୍ତି ପାଇ ତାର ଲେଖମା ବଳବତ୍ତର ହେବା ବାଞ୍ଛନୀୟ ହୋଇପିବା ଅସମ୍ଭବ ନୁହେଁ । ମନୀଷ କ୍ଳ ବନ୍ତ, ଗଳିତ ଚେତନା, ହିଂସ୍ରତା, ବ୍ୟାଧି ସବୁ ଊର୍ଦ୍ଧ୍ୱରେ ସେଇ ମହତ୍ତର ଚିନ୍ତାଧାରାକୁ ରୂପ ଦେବାକୁ ଯୁବକବ ଗୋଷ୍ଠୀ ଦୃଢ଼ ଚିତ୍ତ ହେବାକୁ ଚାହିଁଛନ୍ତି । ସେମାନେ ଅନୁଭବ କରନ୍ତି — ଏ ଯୁଗରେ ଯେଉଁ ଆତଙ୍କର ସୃଷ୍ଟି ହୋଇଛି ବା ଯୁବମାନସ ସନ୍ଦେହ ବିଦ୍ରୋହ ପଳାୟନ ଧ୍ୱଂସ ଦ୍ୱାରା ଆକ୍ରାନ୍ତ ହୋଇ ଯାଇଛି — ସେଇ ରୁଗ୍ଣ ଅଂଧକାର ମଧ୍ୟରୁ ନିର୍ଭୟ ଓ ନିରାପଦର ଆଲୋକ ବର୍ତ୍ତିକା ଧରି ଏକ ନୂତନ ସୂର୍ଯ୍ୟର ବନ୍ଦନା କରିବେ ଶାନ୍ତି ଓ ଶୃଙ୍ଖଳା ପାଇ ସଂଗ୍ରାମ କରିବେ । ଏ ଛନ୍ଦରେ ସୂଚୀପତ୍ରରେ ବାହ୍ୟ ଓ ଅନ୍ତର୍ସ୍ୱରରେ ଜୀବନର ସାର୍ଥକ ଗତିଶୀଳତାର ସୂଚନା ଦେବାକୁ ସେମାନେ ନୂତନ ସଂଘର୍ଷର ଲାଲ ଝଣ୍ଡା ଟେକି ଧରିବେ ।

•

ପ୍ରଗତିଶୀଳ ଚିନ୍ତାଧାରା କ'ଣ ? ଆଜି ପ୍ରଗତିର ଏଇ ଯେଉଁ ବଳିଷ୍ଠ ସ୍ୱର ଶୁଣାଇବାକୁ ଗୋଷ୍ଠୀ ବ୍ୟସ୍ତ ବ୍ୟାକୁଳ — ତାହାର ଉନ୍ମେଷ କଣ ଆଗରୁ ହୋଇ ନଥିଲା । ଯେବେଠୁ ସ୍ୱାର ଜନ୍ମ— ସେଇ ଦିନଠାରୁ ଆଜି ପର୍ଯ୍ୟନ୍ତ ଦେଖା ଦେଇଥିବା ପ୍ରଗତି ସାହିତ୍ୟର ରୂପ କଣ ? ଆଜି ତାର ରୂପ କଣ ? କେହି କେହି ମତ ଦେଇ ପାରନ୍ତି, ବିଜ୍ଞାନରେ ବିକାଶ ଯୋଗୁ ଶିଳ୍ପ ଶିଳ୍ପରୁ ଶିଳ୍ପ ବିପ୍ଳବ ବିଜ୍ଞାନ ପୁଣି ପ୍ରକୃତିକୁ ନିୟନ୍ତ୍ରଣ କରିବା ଫଳରେ ମାନବ ଚେତନାରେ ଏକ ବିପୁଳ ପରିବର୍ତ୍ତନ ଦେଖା ଦେଲା । ସେଥିପାଇଁ ମନୁଷ୍ୟର ଚିନ୍ତାଧାରା ଆଗକୁ ଆଗକୁ ବଢ଼ିବାରେ ଲାଗିଲା, ପ୍ରଗତିର ରୂପ ବଦଳିବାରେ ଲାଗିଲା । ମାତ୍ର ବର୍ତ୍ତମାନ ସେଇ ପ୍ରଗତିର ରୂପ

ମଧ୍ୟ ସେହି ବିଜ୍ଞାନରେ କ୍ଷିପ୍ର ଅଗ୍ରଗତିରେ ଧରା ପଡ଼ୁଛି । ଆମ ସାମନାରେ ସ୍ଥୂଳ ପୃଥିବୀର ଯେଉଁ ନକ୍ସା ସୃଷ୍ଟି କରୁଛି—ଆମେ ତାହା ସହିତ ସମ୍ପୂର୍ଣ୍ଣ ପରିଚୟ ସ୍ଥାପନ କରିବାରେ ବ୍ୟସ୍ତ । ଦେଶ ଓ ସମାଜ ବର୍ତ୍ତମାନ ଯେଉଁ ପ୍ରଗତି ପଥରେ ପ୍ରଧାବିତ ସେ ପଥରେ ଆଧ୍ୟାତ୍ମିକ ଶକ୍ତିର ପରୋକ୍ଷ ରୂପ ବିରାଟ ପରିବର୍ତ୍ତନ ଆଣିବାରେ ମଧ୍ୟ ସାହାଯ୍ୟ କରୁଛି । ବର୍ତ୍ତମାନ ମାର୍କସଙ୍କ "ଶକ୍ତି" କପରି ମଣିଷର ହୃଦୟରୁ ଦୟା କ୍ଷମା ତ୍ୟାଗ ସରଳତା ଆତ୍ମ ସମର୍ପଣ ଆଦି ପ୍ରବୃତ୍ତିକୁ ଧ୍ୱଂସମୁଖୀ କରିବା ଯୋଗ୍ୟ ଅନ୍ଧ ମାନବ ଶକ୍ତିରେ ପରିଣତ ହୋଇ ଥିବାର ଦେଖାଯାଏ ।

ଓଡ଼ିଆ ସାହିତ୍ୟରେ ପ୍ରାଚୀନ ପରମ୍ପରାକୁ ସମ୍ମାନ ପ୍ରଦର୍ଶନ କରି ଓ ତାର ପ୍ରାଣରେ ଦୃଢ଼ଭାବେ ବସା ବାନ୍ଧିଥିବା ଶଙ୍କାସବୁ ମାର୍ଜିତ ରୂପରେ ପ୍ରକାଶ କରି — ଏକ କଳାଗତ ଆତ୍ମପ୍ରକାଶ ଲାଗି ଚେଷ୍ଟିଷ୍ଣୁ ହେବାର ଲକ୍ଷଣ ଦେଖାଯିବା ଉଚିତ । ତା' ନହେଲେ ସତ୍ୟ ଓ ପ୍ରଗତିର ସାକାର ରୂପ ସାହିତ୍ୟରେ ଆନ୍ତରିକ-ତା'ର ସହ ଫୁଟି ପାରିବ ନାହିଁ । ବୌଦ୍ଧିକ ବିଳାସର କଳା ମାନବର ମାନସିକ ପ୍ରବଣତାକୁ ଆଦରି ପାରେ — ମାତ୍ର ପ୍ରକୃତ ସମାଜର ଶିବ ଦେବାରେ ସମର୍ଥ ହେବନାହିଁ । ସଚ୍ଚି ରାଉତରାୟଙ୍କ ଭାଷାରେ — ମଣିଷ ପୃଥିବୀର ସୂର୍ଯ୍ୟାଲୋକର ପ୍ରବାସୀ ··· । ଜୀବନର କ୍ଷିପ୍ରତମ ଗତିରୁ ତାର ଜନ୍ମ ··· ପୁଣି ସମାଧି ତାର ସେହି ନିତ୍ୟ ପ୍ରବହମାନ ଗତିର ଆନନ୍ଦ ମଧ୍ୟରେ "ଶିବଗ୍ରୀବ" ।

ଏକ ନିର୍ଦ୍ଦିଷ୍ଟ ଚେତନାର ଧାରା ସରଳରେଖାରେ ଆତ୍ମ ପ୍ରକାଶ କରୁଛି । କାରଣ ସତ୍ୟ କଥାଟି ଆଖି ଆଗରେ ସ୍ଥୂଳ ଓ ବାସ୍ତବ ରୂପେ ଦେଖା ଯାଉଛି । ତାର ଆତ୍ମ ପ୍ରକାଶ ଲାଗି

ଆବେଗ ଉଚ୍ଛ୍ୱାସ ଗୋଟିଏ ଧାରାକୁ ଅଂଗୁଳି ନିର୍ଦ୍ଦେଶ କରୁଛି । ତେବେ, ସେଇ ସତ୍ୟ କଥାଟି ବ୍ୟକ୍ତି ସମାଜ ଗୋଷ୍ଠୀ ଭିତରେ ପ୍ରତି ମୁହୂର୍ତ୍ତରେ ଆଲୋଡ଼ନ ସୃଷ୍ଟି କରୁଛି । ନ୍ୟସ୍ତସ୍ୱାର୍ଥ ଓ ପରମ୍ପରାଗତ ଅଧିକାରର ପରିବର୍ତ୍ତନ ସମ୍ଭବ ହେଉଛି । ଏ କଥାରୁ ପ୍ରତୀୟମାନ ହେଉଛି ଗୋଟିଏ ନୂତନ ସମାଜ ଯେପରି ଆପଣାଛାଏ ଗଢ଼ି ଉଠୁଛି ଓ ପୁରାତନ ପ୍ରତିକ୍ରିୟାଶୀଳ ଜଗତ କାଳର ପ୍ରବଳ ସ୍ରୋତରେ ଭାଂଗି ଚୁରମାର ହୋଇ ତଳେ ଧସି ପଡ଼ୁଛି । ଏହି ପରିବର୍ତ୍ତନର କେନ୍ଦ୍ରରେ ଜୀବନ ସନ୍ଧାନ ସ୍ୱାଧୀନତା ଓ ସୁଖର ଅନ୍ୱେଷଣ ଗୃଢ଼ି ରହିଛି । ଯୁବ ମାନସରେ ସେଇ ଅଦ୍ଭୁତ ଚେତନା ସମାଜ ଗୋଷ୍ଠୀକୁ ପରିବର୍ତ୍ତନ କରିବା ଦିଗରେ ସାହାଯ୍ୟ କରେ — ସେଥିପାଇଁ ଏକ ଶକ୍ତିଶାଳୀ ବିପ୍ଳବ ଲେଖମି ମୂଳରେ ଆବଶ୍ୟକ ପଡ଼ୁଛି । ପ୍ରଥମେ କବିତା କେବଳ ଏ ପ୍ରକାର ବିପ୍ଳବକୁ ବହନ କରି ଆଗେଇବାର ସମର୍ଥ ହେବ । ଯଦିଓ ଏହାର କାଳାନ୍ତର ହୋଇ ସାରିଛି, ତଥାପି ଏହାର ସ୍ପଷ୍ଟ ରୂପ ବୈପ୍ଳବିକ ରୂପ ସମାଜକୁ କେନ୍ଦ୍ରକରି ହୋଇ ଆସିଛି । ଏ ଦଶକର କବିତାରେ ମୁକ୍ତିର ପ୍ରଜ୍ୱଳିତ ସ୍ୱାକ୍ଷର ରହିବାର କଥା । ତାହା ରହିଛି କି ନାହିଁ ଦେଖିବାର ବେଳ ଆସିଛି । ମୁକ୍ତିକାମୀ ଯୁବଗୋଷ୍ଠୀ ଏଇ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଆଗେଇବାର ଦେଖା ଯାଉଛି । ତେବେ ସେଇ ଆତଙ୍କ ମଧ୍ୟରେ ପ୍ରଳୟ ମଧ୍ୟରେ ସୃଷ୍ଟି ଆଦ୍ୟ ରୂପ ଦେଖିବା ଲାଗି ସମସ୍ତେ ବ୍ୟାକୁଳ ହେବା — ପ୍ରଗତିର ଲକ୍ଷଣ ।

ବାସ୍ତବିକ ଏହି ଗତିଶୀଳ ଚିନ୍ତାଧାରାର ଉନ୍ମେଷ କାଳ ସମ୍ଭବତଃ 'ନବଯୁଗ ସାହିତ୍ୟ ସଂସଦ' । ସେ ସଂସଦର ଭଗବତୀଚରଣ ପାଣିଗ୍ରାହୀଙ୍କ ଗଳ୍ପ କବିତାରେ — କେବଳ ପ୍ରାରମ୍ଭିକ ଚେଷ୍ଟା

ମାତ୍ର କରି ଯାଇଥିଲେ । ଅନନ୍ତ ପଞ୍ଚନାୟକ ମଧ୍ୟ ସେଇ ଦର୍ଶନରେ ଅଭିଭୂତ ହୋଇ ପଡ଼ିଥିଲେ—ମାତ୍ର ସେଇ ବୈପ୍ଳବିକ ଚେତନାକୁ ରବିସିଂ କେବଳ ଆଜଯାଏ ବଞ୍ଚାଇ ଆସିଲେ । କଣ୍ଟ୍ରୋଲ ପାରବତା ପରେ — ପୁଣି ପ୍ରଗତିର ସ୍ୱର ସ୍ପଷ୍ଟ ହୋଇ ଉଠୁଛି ତାଙ୍କ କବିତାରେ ଓ ଅନ୍ୟରୂପ ନେଇଚ ଗୋଷ୍ଠୀ ଗତରେ । ତେବେ ଏଇ ବଳିଷ୍ଠ ସ୍ୱର ଯୁବ ମାନସକୁ ଅନ୍ୟ ରୂପରେ ଆନ୍ଦୋଳିତ କରୁଛି । ସ୍ପ୍ରି ମଞ୍ଚରେ ଅନେକ ସଂସଦ ଗଠିତ ହୋଇ ଯୁବ ମାନସର ପ୍ରତିକ୍ରିୟା ଦେଖୁଛି । ସାହିତ୍ୟକ ଆତ୍ମ ପ୍ରକାଶ କଳାର ଆତ୍ମ ପ୍ରକାଶ — ବ୍ୟକ୍ତି କେନ୍ଦ୍ରିକ ଚିନ୍ତାଧାରାର ମୌଳିକ ଆତ୍ମ ପ୍ରକାଶ ଇତ୍ୟାଦି ବୌଦ୍ଧିକ ଚେତନା ଆଡ଼କୁ କମ୍ପା ସେହି ଚେତନାରୁ ଏକ ଶାଖା ରୂପେ ପ୍ରଗତିକୁ ଛାଡ଼ ଦେଇ ସାହିତ୍ୟ ସେବା କରିବାରେ ଲାଗିଲେ ।

ବର୍ତ୍ତମାନର ସମସ୍ୟା ହେଉଚ ସେଦିନର ସମସ୍ୟା । ମୁକ୍ତିକାମୀ ଯୁବଗୋଷ୍ଠୀ ତାର ଇସ୍ତାହାରରେ ଗୃହେ । ଚେତନାର କ୍ଷିପ୍ର ଆତ୍ମ ପ୍ରକାଶ ଲାଗି ବ୍ୟାକୁଳ—ସନ୍ୟାସ, ନିଜର ପରିବେଶ ମଧ୍ୟରେ ନିଜକୁ ଓ ନିଜର ପରିବେଶକୁ ନେଇ ସାହିତ୍ୟ ସୃଷ୍ଟି କରିବା ଲାଗି ବଶ୍ୟତା ପ୍ରକାଶ କରିବା ହେଲା ତାର ମୁଖ୍ୟ ଉଦ୍ଦେଶ୍ୟ । ମାତ୍ର ସେ ଉଦ୍ଦେଶ୍ୟ କେବଳ ନବ ଦିଗଂତର ବାର୍ତ୍ତା ବହନ କରିପାରେ । ସେମାନେ ସ୍ୱାପ୍ରତିକ କାରଣ ତାଙ୍କର ବ୍ୟକ୍ତି ସ୍ୱାତନ୍ତ୍ର୍ୟ ବୋଧ ରହିଚ । କେତେକ ଭିନ୍ନ ଧାତୁର ସାହାଯ୍ୟରେ ଏକ କାହାକର ରୂପ ଦେଇ ସେ ହେବାକୁ ବୃହାନ୍ତ ଦ୍ରୁତଗାମୀ ଉଦ୍ୟମଶୀଳ ଓ ସହସ୍ର ଅଶ୍ୱ ଶକ୍ତି ବଶିଷ୍ଟ । ଏଣୁ ବ୍ୟକ୍ତିକୁ ଗୋଷ୍ଠୀର ଲେବୁଲ ମାରି ସେମାନେ ଅଗ୍ରଗାମୀ । ଯୁବକବି ତାର

ପରିଚୟ ତିଆରି କରେ ଅଜବ ଭାବରେ — ନାମହୀନ ଅନାମ ଅଦରକାରୀ ଲିପି ଙ ଞ ଢ ଏହାର ମଧ୍ୟ ପ୍ରତିଧ୍ୱନି ରହିଛି । ଓଡ଼ିଆ ସାହିତ୍ୟକୁ ପ୍ରଗତିଶୀଳ କରିବାରେ ଯେଉଁମାନେ ଭାବନାରେ ଚେତନାରେ ଓ ନିପୁଣତାରେ ଲାଗି ପଡ଼ିଛନ୍ତି ସେମାନେ ସ୍ୱୀକୃତି ପାଇଁ ବ୍ୟାକୁଳ ନହୋଇ ଭାବର ଆଦାନ ପ୍ରଦାନରେ ଦୃଢ଼ ସହିତ ରଖି ସେ ଆଗେଇବାକୁ ଚାହାନ୍ତି । ସେମାନେ ଅଜବ ଅବୁଝା ଅନାମ ହେବା ପଛରେ ଏକ ନୂତନ ଦିଗନ୍ତର ସୂଚନା ମିଳୁଛି । ସେମାନେ ଅଧିକ ଆଶାବାଦୀ । ଯାହା ପ୍ରଗତି ସାହିତ୍ୟର ପ୍ରକୃତ ଖସଡ଼ା ତାକୁ ମାନି ନେବାକୁ ସେମାନେ ପ୍ରସ୍ତୁତ । ସହସ୍ର ଅବହେଳିତ ଲାଞ୍ଛିତ ସହାନୁଭୂତି ହୀନ କପଟାଚରଣରୁ ମୁକ୍ତି ଲାଗି ତାର ସମଚେତକ ଗୋଷ୍ଠୀକୁ ସେ ଆହ୍ୱାନ କରିବା ଆରମ୍ଭ କରିଛି, କାରଣ ଧ୍ୱଂସ ଭିତରୁ ଦୁର୍ଜନର ନୃତ୍ୟ ସେ ଦେଖିବାକୁ ସେ ଆଶା ପ୍ରକାଶ କରନ୍ତି । ଆପାତତଃ ଯୁବକବିମାନଙ୍କୁ ପ୍ରଗତିଶୀଳ ଆଖ୍ୟା ଦେଲାବେଳେ ଆଜି ଗୋଟିଏ କଥା ମନକୁ ଆସେ — ତାହା ହେଉଛି ପ୍ରଗତିଶୀଳ ସାହିତ୍ୟ ଆମ ଦେଶରେ କିପରି ହେବା ଉଚିତ । ଯେତେବେଳେ 'ପ୍ରଗତିଶୀଳ ସାହିତ୍ୟ ଜନତାର ବାସ୍ତବ ଜୀବନର ସାହିତ୍ୟ ଅବା ଯେଉଁ ସାହିତ୍ୟରେ ପ୍ରଚଳିତ ସମାଜର ବ୍ୟାଖ୍ୟା ଥାଏ — ତାହାକୁ ଆମେ ଜନ ବା ଗଣ ସାହିତ୍ୟ କହିବା ଯୁକ୍ତିଯୁକ୍ତ ହେବ । ଜୀବନ ପ୍ରତି ସାମ୍ୟ ଓ ନ୍ୟାୟ ବା ସାମାଜିକ ସ୍ଥାନ ସମ୍ପର୍କରେ ପୂର୍ଣ୍ଣ ଚେତନା ଦେଇଥିବା, ପ୍ରାଚୀନ ପରମ୍ପରାକୁ ନୂତନ ରୂପରେ ଗୌରବ ଆଣି ବିଶ୍ୱାସକୁ ମାର୍ଜିତ ରୂପରେ ଦେଖିବା ପ୍ରଗତି କବିର ପକ୍ଷରେ ଧର୍ମ ହୋଇ ଉଠେ ଓ ଗଣ ଜୀବନର ଶ୍ରମ ସାହସ ଆଶା ଆକାଙ୍କ୍ଷା ସମ୍ପର୍କରେ ସଚେତନ ରହି ଏକ ନୂତନ ଆଦର୍ଶ ବୋଧ ସୃଷ୍ଟି କରିଥାଏ । ଏଇ ପରି-

ଚେଷ୍ଟାରେ ଚୀନ ଆଉ ରୁଷିଆର ପ୍ରଗତି ସାହିତ୍ୟରେ ମନୀଷ ଦେଖିଛି ସବୁଠାରୁ ଚରମତମ ସତ୍ୟ । ପ୍ରଗତିର ଷିପ୍ରତାରେ ଯେଉଁ ଆନନ୍ଦବୋଧ ସୃଷ୍ଟି ତାହାର ଲକ୍ଷଣ କେବଳ ପ୍ରଗତି ସାହିତ୍ୟରେ ଦେଖାଯାଏ ।

ସୁପ୍ରତିଷ୍ଠିତ ପ୍ରଗତି କବି ଶ୍ରୀଚରେ ସଚି ରାଉତରାୟ ଅନନ୍ତ ପଟ୍ଟନାୟକ ପ୍ରଥମେ ଏକ ଆଦର୍ଶ ପ୍ରଚାର କରିବାରେ ଲାଗିଥିଲେ ମାୟାକୋଭସ୍କି — ନଜରୁଲଙ୍କ ଆଦର୍ଶ ବହନ କରି ଓଡ଼ିଆ କବି ମାନବବାଦର ଜୟ ଜୟକାର କରିବା ଆରମ୍ଭ କରିଥିଲେ । କବି ରବି ସିଂହଙ୍କର ଆତ୍ମ-ପ୍ରକାଶ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ସୃଷ୍ଟି କରିବାରେ ଦେଖାଗଲା । ଆଧ୍ୟାତ୍ମିକ ଚିନ୍ତାଧାରାର ପରୋକ୍ଷ ରୂପ ଫଳରେ ଅପରାଧଶୀଳ ଆତ୍ମକାନ୍ତୀର ମୁଖା ପିନ୍ଧା ଛଦ୍ମବେଶୀମାନଙ୍କୁ ସ୍ପଷ୍ଟ ଦିବାଲୋକରେ ଦେଖି ହେଲା । ସମାଜର ପ୍ରଚଳିତ ଧର୍ମ ବିଶ୍ୱାସର ଶୃଙ୍ଖଳ ଛିନ୍ନକରି, ଶାସନରେ ଘଟୁଥିବା ଦୈନନ୍ଦିନ ସହସ୍ର କୁତ୍ସିତ ଦୁର୍ଘଟଣା ଓ ଦୁର୍ନୀତି ଭିତରୁ ପ୍ରକୃତ ମନୀଷକୁ ଆବିଷ୍କାର କରିବା ଲାଗି ଲେଖନୀ ଉନ୍ମୁଖ ହୋଇଛି, ସେଇ ଆନ୍ଦୋଳନ ଏକ ନର୍ଜଳା ସତ୍ୟ ରୂପେ ଓଡ଼ିଆ କବିତା କ୍ଷେତ୍ରରେ ଆଉ ଏକ ଅଧ୍ୟାୟ ସୃଷ୍ଟି କରିଛି । ପ୍ରଗତି ଲାଗି ଗୋଷ୍ଠୀର ଆବଶ୍ୟକତା ଉପଲବ୍ଧି ହୋଇଅଛି । ଗୋଷ୍ଠୀର ଆତ୍ମପ୍ରକାଶ ଭିତରେ ବିଶ୍ୱ-ମାନସର ନିରପେକ୍ଷ ପ୍ରତିବିମ୍ବ ସ୍ପଷ୍ଟ ହୋଇ ଉଠିଛି ।

ଗୋଷ୍ଠୀର ସେଥିପାଇଁ ରୂପାନ୍ତର ହୋଇଛି — ସେଇ ସହସ୍ର ଅଶ୍ୱଶକ୍ତି ବିଶିଷ୍ଟ ଜାହାଜରେ ଯାହାକୁ ଆମେ ଯୁବ ଲେଖକ ସମ୍ମେଳନ ଆଖ୍ୟା ଦେଇଛୁ । ଯେଉଁଦିନ ପୂର୍ଣ୍ଣ ସ୍ୱାଧୀନତାର

ବାତାବରଣ ମଧ୍ୟରେ ସାହିତ୍ୟିକ ରୁଚି ବଢ଼ାଇବାକୁ ସାହିତ୍ୟିକ-ମାନଙ୍କ ମଧ୍ୟରେ ପରୀକ୍ଷାମୂଳକ ଭାବରେ ନୂତନ ଚେତନାର ସୂତ୍ରପାତ କରିବା ଉଦ୍ଦେଶ୍ୟରେ ଓ ଭାବର ଆଦାନପ୍ରଦାନ ଦ୍ୱାରା ବିଭିନ୍ନ ଅଭିଜ୍ଞତା ଅନୁଭୂତ ବିନିମୟ ଲାଗି ପୁରୀର ବଡ଼ଦାଣ୍ଡରେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି କରାଗଲା — ଅନେକ ଆଭିମୁଖ୍ୟ ଥିଲେ ମଧ୍ୟ ତାହାର ମୋଟାମୋଟି ଫଳ ହେଲା ଏକ ନୂତନ ଆଲୋଡ଼ନ । ଯେଉଁ ଆଲୋଡ଼ନ ଏକ ସ୍ଥିର ଅବିଚଳିତ ଚିନ୍ତା-ଧାରାରେ ଧକ୍କା ସୃଷ୍ଟି କଲା । ସେ ଭାଂଗିବାର ଯନ୍ତ୍ରଣା ବିଭିନ୍ନ ଲେଖାରେ ପ୍ରକାଶ ପାଇଲା । ଯୁବଶକ୍ତିର କଠୋର ଆକ୍ରମଣ ଫଳରେ ନୂତନ ଏକ ଢାଂଗତର ପରିଚୟ ମିଳିଲା ଆତ୍ମ-ବିଶ୍ଳେଷଣ ଦ୍ୱାରା ଅଧିକ ଅଗ୍ରସର ହେବାର ମାଧ୍ୟମ ସୃଷ୍ଟି ହୋଇଗଲା । ସେଥିପାଇଁ ଯୁବ ଲେଖକ ସମ୍ମେଳନର ପ୍ରଥମ କର୍ମକର୍ତ୍ତା ଆଜି ତତ୍‌କାଳୀନ ଗୋଷ୍ଠୀ ସାହିତ୍ୟିକ ମାନଙ୍କର ଯଥା -- ଗୋଦାବରୀଶ ସାହିତ୍ୟ ସଂସଦ, ରବିବାସରୀୟ ସାହିତ୍ୟ ସଂସଦ (ପୁରୀ ଓ କଟକ) ପୁଷ୍ପଟେର ସାହିତ୍ୟ ପରିଷଦ ଆଦିଙ୍କ ଦ୍ୱାରା ଏହା ସମ୍ପ୍ରସାରିତ ହୋଇ ଆତ୍ମ ପ୍ରକାଶ କଲା । ପ୍ରଥମ ଆଉ ଦ୍ୱିତୀୟ ଯୁବ ଲେଖକ ସମ୍ମେଳନ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ସୃଷ୍ଟି କଲା -- ତାହା ନିଶ୍ଚିତ ଐତିହାସିକ ବୋଲି ମୋର ମନେହୁଏ । ଏହାଦ୍ୱାରା ଏକ ନୂତନ ଉତ୍ସାହ-ନୂତନ ଅହଂବୋଧ, ପରମ୍ପରାକୁ ସ୍ୱୀକାର କରି ନୂତନ ଏକ ଆଭିମୁଖ୍ୟ ରଚନା କରିବାର ପ୍ରଚେଷ୍ଟା ଆସି ମିଳିଲା । କ୍ରମଶଃ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଏହାର ପ୍ରତିଧ୍ୱନି ସୃଷ୍ଟି ହେଲା — ବଂଗଳାର ପ୍ରବୋଧ ସାନ୍ୟାଲ, ଶ୍ରୀଶଙ୍କର, ବୁଦ୍ଧଦେବ ବସୁ, ସୁନୀଲ ଗଂଗୋ-ପାଧ୍ୟାୟ ତରୁଣ ସାନ୍ୟାଲ ଦିଗମ୍ବର ଗୋଷ୍ଠୀର ଲେଖକ ଓ ଓଡ଼ିଶାର ସୁପ୍ରତିଷ୍ଠ ସାହିତ୍ୟିକଙ୍କର ସମକାଳୀନ ସାହିତ୍ୟ ଉପରେ

ଭାନ୍ତିକପୂର୍ଣ୍ଣ ଆଲୋଚନା ଯୁବ ପ୍ରାଣରେ ଅଦ୍ଭୁତ ଭାବାବେଶ ଓ ଭାବାବେଗ ସୃଷ୍ଟି କଲା । ଯୁବ ସାହିତ୍ୟିକ ଅଧିକ ସଂଖ୍ୟକ ପାଠକ ସୃଷ୍ଟି କରିବା ଯୁବ ସାହିତ୍ୟିକମାନଙ୍କୁ ଉତ୍ସାହିତ କରିବା ନିମନ୍ତେ ପ୍ରକାଶନର ବ୍ୟବସ୍ଥା କରିବା, ପୁସ୍ତକାଗାରର ବ୍ୟବସ୍ଥା କରିବା, ଅନୁବାଦ କରିବା, ବିଜ୍ଞାନ ସମ୍ମତ ଆଲୋଚନା କରିବା ଓ ସାହିତ୍ୟରେ ପରୀକ୍ଷା ନିରୀକ୍ଷା କରିବା — ଏହି ଉଦ୍ଦେଶ୍ୟ ସାଧନ ଢଗରେ ଯୁବଗୋଷ୍ଠୀ ସାହିତ୍ୟ ସମାବେଶ ଙ ଞ ଛ — କାବ୍ୟ ଅନେକ କବିତା ଗ୍ରନ୍ଥ ଲେଖିଲା । ଶ୍ଳୀଳ ଅଶ୍ଳୀଳ ଭାବନେଇ ତିକ୍ତ ସଂଘର୍ଷ ସୃଷ୍ଟି ହେଲା । ପୁରାତନ ରକ୍ଷଣଶୀଳର ସୁଦୃଢ଼ ଜଡ଼ଗଡ଼କୁ ତରଳାଇବାର ମତଲବ୍‌ରେ ଯୁବଗୋଷ୍ଠୀ ଚେଷ୍ଟା କଲା । କାରଣ ଯେଉଁ ସମାଜରେ ଏ ପ୍ରକାର ଅଳଂଧୁ, ଅଂଧକାର ଅତ୍ୟାଚାର, ନିରାପତ୍ତା, ଧନ ଜୀବନର ସୁଖ ଲାଗି ବ୍ୟାକୁଳ ପ୍ରାଣତା ଦେଖା ଦେଲା ନାହିଁ — ସେ ସମାଜରେ ବାସ କରୁଥିବା ଲେଖକ ମନରେ ବିଦ୍ରୋହ ସୃଷ୍ଟି କଲା । କାରଣ ସାହିତ୍ୟ କାହାର ହାତ ବାଶସୀ ନୁହେ କି ବୌଦ୍ଧିକ ବିଳାସର ନୁହେ କିମ୍ବା ଗାଲି ମାଷ୍ଟ୍ରୁ ତ ଅନୁକରଣ ଅନୁସରଣ ନୁହେଁ, ତାର ନିଜସ୍ୱ କିଛି ଅଛି ଯାହା ଭୁଲିଯାଇ ହେବ ନାହିଁ ବା ଅବହେଳା କରି ହେବ ନାହିଁ । ଷଷ୍ଠ ଦଶକଟି ଏପରି ଏକ ଆନ୍ଦୋଳନର ପୃଷ୍ଠଭୂମି ପାଇଁ ଦାୟୀ ହୋଇ ଉଠିଲା । ଏଇଠୁ ସମ୍ଭବତଃ ମୁକ୍ତ ଯନ୍ତ୍ରଣା ସିଧା ସଳଖ ଭାବେ ଆତ୍ମ ପ୍ରକାଶ କଲା ।

ଯା' ହେଉ ଯେଉଁଠି ପ୍ରଗତି ଲାଗି ଗୋଷ୍ଠୀ ଚେତନାର ସମନ୍ୱୟ ଆଶା କରାଯାଉଛି ସେଠାରେ ଦେଖିବାକୁ ହେବ ସଙ୍ଘ ସଂସଦ ଦଳ ସମିତି ଏ ସବୁର ଆବଶ୍ୟକତା କେତେଦୂର । ଯେଉଁ

ସଂଘସବୁ ହେଲା — ଯେଉଁସବୁ କଣ ପ୍ରବୃତ୍ତିର ଉଦ୍ଦେଶ୍ୟରେ କରାଗଲା, ନା ଏବର ମୁହଁରେ ପୂର୍ବ ସଂଘର ସମସ୍ତ ଧର୍ମ ଥିଲେ ମଧ୍ୟ ଗୋଟିଏ ନୂଆକଥା ହେଲା — ପରସ୍ପର ସୃଷ୍ଟି କରୁଥିବା ସାହିତ୍ୟ ସୃଷ୍ଟିରେ ସମସ୍ୱର ଆଣିବା — । ପଞ୍ଚ ଏବର ଗୋଷ୍ଠୀରେ ଏହା ନୂତନ ତାହେଲେ ପୂର୍ବସଂଘରେ ମଧ୍ୟ ଏଇ ଲକ୍ଷ୍ୟ କଣ ନଥିଲା । ତେବେ ଯାର ବିଶେଷତ୍ୱ କଣ—ଆଦର୍ଶ କ'ଣ । "ଆମେ ନବ ଚେତନାର ସଂବର୍ଦ୍ଧନାକାଂକ୍ଷୀ—ବାହକ ନୋହୁଁ । ସମାଜକୁ ସ୍ଥିର ପରମ୍ପରାର ପାଉଦରେ ବନ୍ଦୀ ରଖିବା ଅର୍ଥ ସମାଜକୁ ସ୍ଥିର ମୂକ କରି ଗଢ଼ି ତୋଳିବା — ଗତିଶୀଳତାର ସୂକ୍ଷ୍ମ ସତ୍ୟ ଉପରେ ସମାଜର ଅଭିବୃଦ୍ଧି । ପରମ୍ପରା ଭାଂଗି ପରମ୍ପରା ଗଢ଼ିବା ଆମେ ଜାଣୁନା — ସତ୍ୟ ପାଇଁ ଅନବରତ ସଂଗ୍ରାମ ଲକ୍ଷରେ ଆମର ଗତି" ।

ଏଇ ଯୁବଗୋଷ୍ଠୀ ଜାଣେ, ସାମାଜିକ ଅସ୍ଥିରତା ମଣିଷର ସୁର ଲୁଟି ନେଇଛି — ଅର୍ଥନୈତିକ ସମାସ୍ୟା ମାନସିକ ସ୍ଥବିରତା ସୃଷ୍ଟି କରୁଛି — ରାଜନୈତିକ ବର୍ବରତା ଗଣ ଜୀବନର ସମସ୍ତ ଆନନ୍ଦ ଟିକକ ଶୋଷି ନେଉଛି । ମଣିଷର ଦେହ ରକ୍ତହୀନ ଶ୍ୱେତ ଦିଶୁଛି ଠିକ୍ ସନ୍ଧ୍ୟେ ଧଳା କାଗଜ ପରି । ସେଉଁମାନେ ଏ ପ୍ରକାର ମଲ୍ ବା ପଙ୍ଗୁ ସାହିତ୍ୟ ସୃଷ୍ଟି କରୁଛନ୍ତି — ସେମାନେ କେବେ ଯୁବ ଗୋଷ୍ଠୀର ମାନସ ଚେତନା ସହିତ ତାଳ ଦେଇ ପାରିବେ ନାହିଁ । ଏହି ଗୋଷ୍ଠୀଗତ ଚେତନାର ଉଦ୍ୟମ ଆନ୍ତର୍ଜାତିକ ସମନ୍ୱୟର ଏକ ସୁବର୍ଣ୍ଣ ସେତୁ ବୋଲି ମନେ ହେଲା ।

ପ୍ରଗତିଶୀଳ ବୋଲୁଉଥିବା ଏଇ ଯୁବଗୋଷ୍ଠୀ ଧ୍ୱଂସ, ରକ୍ତ, ସୂର୍ଯ୍ୟ, ଛୁରି, ଗୁଳିଗୁଳା, ଲାଲ, ବ୍ରଜମୁଷ୍ଟି, ଲୌହ, ସର୍ବହରା, ଝଡ଼ ଆଦି ଦେହ ଉତ୍ତେଜକ ଶବ୍ଦ ପ୍ରୟୋଗରେ ରୁଗ୍ଣ ମାନସିକ

ସନ୍ତଣାର ଭାଷା ସୃଷ୍ଟି ହୋଇପାରେ ନାହିଁ —। ସେଥିପାଇଁ ପ୍ରତ୍ୟକ୍ଷ ଅନୁଭୂତି — ଆନ୍ତରିକତା ଗଣ ଲାଗି ସମ୍ବେଦନଶୀଳତା ଓ ଆବେଗ ପ୍ରବଣତା ଏକାନ୍ତ ଆବଶ୍ୟକତା ନହେଲେ — ଆତ୍ମ-ନିର୍ବାସନ ଜ୍ୱାଳାରେ ଜର୍ଜରିତ ବ୍ୟକ୍ତି କେବେ ଗୋଷ୍ଠୀ ମଧ୍ୟରେ ବି ସମତାଳ ଦେଇ ନପାରେ । ଅନ୍ୟ ପକ୍ଷରେ ଏହାକୁ ସର୍ବହରା ସାହିତ୍ୟ କହି ହେବ କାରଣ ଆଜି ସର୍ବହରା ଶ୍ରେଣୀରେ ସାମିଲ ହୋଇଥିବା ସମସ୍ତ ଜନତା ତାର ମାନବିକ ଅଧିକାର ଆଶା କରୁଛି — ଯେଉଁ ଅଧିକାର ଭିତରେ ରହିଛି ତାର ସମସ୍ତ ସୁଖ ସୌଭାଗ୍ୟର ଆଶା—ଭରସା । ତେବେ ଏ ଦେଶର ମାଟି ପାଣି ପବନ ଲୁହ ଲହୁ ଲୁହା ଭିତରେ ଗୋଷ୍ଠୀର ପ୍ରଗତି ଚିନ୍ତା ଆନ୍ତ-ରିକତା ସହ ହୋଇ ପାରୁନି । କାରଣ ହେଉଛି — ଅର୍ଥନୈତିକ ଅନଗ୍ରସରତା । ସେଥିପାଇଁ ସୃଷ୍ଟି ହେଉଛନ୍ତି ବିଦ୍ରୋହୀ ଗୋଷ୍ଠୀ ଦିଗମ୍ବର ଗୋଷ୍ଠୀ କ୍ଷୁଧିତ ଗୋଷ୍ଠୀ, କିନ୍ତୁ ଆମେରିକା ଫ୍ରାନ୍ସ ଇଂଲଣ୍ଡରେ ବିଟନିକ୍ ଗୋଷ୍ଠୀ, ବିଟ୍ଅପ ଗୋଷ୍ଠୀ ସୃଷ୍ଟିତରୁଣ ଗୋଷ୍ଠୀଙ୍କର ଆନ୍ତର୍ଜାତିକ ବିପ୍ଳବର ପ୍ରଭାବରୁ ଭାରତର ଏଇ ଗୋଷ୍ଠୀ ଆଜି ଚେତନା ସମୃଦ୍ଧ । ଏଣୁ ଗୋଷ୍ଠୀ ସାହିତ୍ୟର ମୌଳିକ ଲକ୍ଷ୍ୟ ସ୍ୱାଧୀନ ଭାବରେ ନିଜକୁ ଖୋଲା ଭାବରେ ଆତ୍ମ ପ୍ରକାଶ କରିବା । ବ୍ୟକ୍ତି ବା ଗୋଷ୍ଠୀର ଊର୍ଦ୍ଧ୍ୱରେ ଏକ ସ୍ୱତନ୍ତ୍ର ଧାରା ପ୍ରଣୟନ ପାଇଁ ଓଡ଼ିଆ ଯୁବଗୋଷ୍ଠୀ ମଣିଷ ଜୀବନର ପ୍ରବାହରେ ଐତିହାସିକ ସତ୍ୟର ପ୍ରୟୋଜନୀୟ ପ୍ରଭାବ ଉପଲବ୍ଧି କରିଛି । ସେଥିପାଇଁ ସେ ପ୍ରଜାପତି, ଅଗ୍ନିଶର୍ମା ଅଗ୍ରଦୂତ ଅଗ୍ରଗାମୀ ଅଖିଳପତି, ମୁକ୍ତିର ସ୍ୱର ବହନ କରି ଅନାମ ଅରୁଣିମା ନକ୍ଷତ୍ର ଉଦୟ ବିଦ୍ରୋହୀ ଗୋଷ୍ଠୀର ଆତ୍ମ ପ୍ରକାଶ ଷଷ୍ଠ ଦଶକରେ ସମ୍ଭବ ହୋଇଛି । ସାହିତ୍ୟିକ ରୂପ ଚେତନାର ଜଟିଳତା ଦୁର୍ବୋଧତା ବିରୁଦ୍ଧରେ ଏ କାଳରେ ମଧ୍ୟ

ବିପ୍ଳବ ସୃଷ୍ଟି ହୋଇଥିଲା, ମାତ୍ର ମିଶାମିଶି ସ୍ୱ ଅଭିବ୍ୟକ୍ତି ବା ବକ୍ତବ୍ୟ ପ୍ରକାଶ କରି ଯୁବ ଶତକରେ ଏକ ଉଦ୍ୟମ ମଧ୍ୟ ଆତ୍ମ ପ୍ରକାଶର ସୁଯୋଗ ଖୋଜୁଥିଲା । ଆଜିର ଓଡ଼ିଆ କବିତା କ୍ଷେତ୍ରରେ ଯେଉଁ ଏକ ପ୍ରଚଣ୍ଡ ଚୈତାଳିକ ସୃଷ୍ଟି ଦେଖା ଦେଇଥିଲା — ତାହା ଗୋଟିଏ ଦିଗରେ ବୌଦ୍ଧିକରଣ — ଯାହାର ପରମ୍ପରା ସମୃଦ୍ଧ ମାତ୍ର ଏଇ ପ୍ରଗତିଶୀଳ କବିତାର ଘାତାତ୍ମକ କ୍ଷିପ୍ର ' ଆତ୍ମ ପ୍ରକାଶ ସମାଜରେ ଘଟି ଯାଉଥିବା ଘଟଣାକୁ ନେଇ ଆନ୍ତରିକତା ସହ ଆତ୍ମ ପ୍ରକାଶ କରୁଛି — ତାହା ଲକ୍ଷ୍ୟ କରିବାର କଥା । ଯୁବଗୋଷ୍ଠୀ ବର୍ତ୍ତମାନ ଧର୍ମରେ ବୃଦ୍ଧ ବିଦ୍ରୋହୀ । ସେ ଚାହେଁ ଆପଣାର ରକ୍ତରେ ସବୁଜ ମାଟି ଆଉ ନୀଳ ଆକାଶ ବୁକୁରେ ଆପଣାର ଦୁଃଖକୁ ଶବ୍ଦ ଲେଖିବ । ସେଥିପାଇଁ ସେ ଚାହେଁ —

କାମ ନୁହେଁ ମୁଁ ମୋ ଖାଲି ଆଙ୍କିବା କାଗଜରେ ଛବି ସମ୍ମିଳିତ ଜୀବନର କଣ୍ଠର ପ୍ରତିଧ୍ୱନିର ଜବାବ —

ମୋତେ ଦିଅ ରକ୍ତର ସିରିଞ୍ଜ ଏକ
ନଆଁ ପକା ଦେଇ ଇଞ୍ଚ ବ୍ରୁଶ
ସ୍ୱେଦେ ଗଢ଼ା ଲୁହାର କଚ୍ଚୁଶ
ଅସଭ୍ୟ ଏ ସହରର
ବ୍ୟବଚ୍ଛେଦ ଶବେ
ଆଙ୍କିବ ମୁଁ ଭୁମ ଫଂଗୁ ଛବି
ନାମ ମୋର ଅବଧୂତ କବି । (ଅଗ୍ନି ଶର୍ମା).

ଯେତେବେଳେ କବି ରବିସିଂଙ୍କ, କଂଠରୁ ବିଦ୍ରୋହର ଉତ୍ତାପର ପ୍ରକାଶ ପାଏ —

ଧ୍ରଗଣର ମୂର୍ତ୍ତି ଭୀଷଣ ଗୋଟାଏ ଶଙ୍ଖ
ମାନବବାଦର ଉଗ୍ର ବିଜୟ ବାନା

ଅବା ସେ ଗଣ ଜନତାର ଅବହେଳିତ ପୀଡ଼ିତ ଚିତ୍ତରେ ଚିନ୍ତାକୁ ମିଶାଇ ସୃଷ୍ଟିର ଧ୍ୱଂସ କାମନା କରିଛନ୍ତି ଓ ଧ୍ୱଂସଦ୍ୱାରା ନୂତନ ସୃଷ୍ଟିର ଆଶା ମଧ୍ୟ ବାନ୍ଧିଛନ୍ତି — ସେତେବେଳେ ସେ ପ୍ରଳୟ-ରୁଦ୍ର-ସନାତନ ଘୋଷଣାରେ ସ୍ୱାଗତ ଜଣାଇଛନ୍ତି ।

ତଥାପି ମୁଁ ବଜାଇବ ପ୍ରଳୟର ଝମକ
ଆଣିବରେ ଧ୍ୱଂସର ଚମକ
ଅଛ ଯେତେ ବନ୍ଧନ
ପାରିବରେ ଛିନ୍ନିତ
ନାଲି ଆଖି ଧମକ
ଧ୍ୱଂସର ବିନା କାହିଁ
ସୃଷ୍ଟିର ଗମକ ।

ଯୁଗ ଯନ୍ତ୍ରଣାର ସ୍ପଷ୍ଟ ଚିହ୍ନ ତଥା ଆଗାମୀ ଯୁବ-ପ୍ରାଣରେ ବିଦ୍ରୋହ ସୃଷ୍ଟି କରିବା ପାଇଁ ରାଜତନ୍ତ୍ରଙ୍କ ବିକ୍ଷୁବ୍ଧ ଭାଷାରେ— ପଦେ ।

ତେଜରେ ଶ୍ରମିକ ଭୟ
ଗାଅ ସବୁ ଆଜ ବିଶ୍ୱର ଯେତେ,
ପୀଡ଼ିତ ପ୍ରାଣର ଜୟ ।

ସମ୍ଭବତଃ ଯୁବଗୋଷ୍ଠୀ ବିଦ୍ରୋହ ଆଡ଼କୁ ଚାଲିବା ଅସ୍ୱାଭାବିକ ନୁହେଁ । ଡ଼ଃ ମହତାବଙ୍କର ପ୍ରବନ୍ଧ "ପ୍ରଗତି ଓ ଅଧିକାର" ଓ

ହରିହର ମିଶ୍ରଙ୍କର ନୂତନ ଗଳ୍ପ ନୂତନ ସ୍ୱର (ସମାବେଶ) ଆତ୍ମ ନିର୍ବାସନ ଧର୍ମ ଓ ଦେବତା" ସୀତାକାନ୍ତ ମହାପାତ୍ରଙ୍କର ପ୍ରବନ୍ଧମାନଙ୍କରେ ଏ ଚେତନାର ଦିକ୍‌ଦର୍ଶନ ଦେଖାଯାଏ — ଏଠାରେ ବ୍ୟକ୍ତି ଜ୍ୱଳନ ହେଉଛି ତୀବ୍ର — ମନମୋହନ ମିଶ୍ରଙ୍କର ବିଦ୍ରୋହୀ ସଙ୍ଗୀତ ଗୁଡ଼ିକ ଅନନ୍ତ ପଟ୍ଟନାୟକଙ୍କର କେତେକ କବିତାର ସେଇ ସ୍ୱର ବାସ୍ତବିକ ଏଇ ଉଦ୍‌ବୁଦ୍ଧ ଚେତନାର ନିମଗ୍ନ ଅର୍ଦ୍ଧଦୃଶ୍ୟ ଛବିସବୁ ଦେଖାଯାଏ ଆଜି ଶ୍ରୀକାନ୍ତ ଗଳ୍ପରେ ଭଗବତୀଚରଣ ବର୍ମା । ମାର୍କସଧର୍ମୀ ପ୍ରଭୃତି ଧର୍ମୀ କଥା ଉଠାଇ ଦେବାର ଏ ବେଳ ନୁହେଁ—ବରଂ ତୀବ୍ର ଆତ୍ମ ପ୍ରକାଶ କରିବାର ନିଶ୍ଚିତ ସ୍ୱାଗତ ଯୋଗ୍ୟ ସମୟ ପୁଣି ଆସିଛି । ସ୍ୱଭାବତଃ ଏହା ହେଉଛି ଏକ ଉଦ୍‌ବୋଧନ—ଅବଶ୍ୟ ବ୍ରଜ ରଥଙ୍କ ଭାଷାରେ ଆଜି ପାର୍ବଣେ ପ୍ରୀତ ଉତ୍ସବ କାହିଁରେ — ନୈବେଦ୍ୟ ସଙ୍କେତ ରହିଥିବା ଭଳି ନୁହେଁ ଏହା ଏକ ଉଦ୍‌ବୋଧନ ଯାହା ଆମର ଅନ୍ତର ପଲ୍ଲବର ଆନ୍ତରିକ ସ୍ୱର—ଧରଣୀର କାତର ପ୍ରାର୍ଥନା ଶୁଣି ଦେବତାମାନେ ଏକ ମଣିଷ ସୃଷ୍ଟି କରୁଛନ୍ତି — ତାଙ୍କର ସମସ୍ତ ଶକ୍ତି ଦେଇ ତାକୁ ଆଶ୍ଚର୍ଯ୍ୟ ମୁହୂର୍ତ୍ତରେ ଜନ୍ମ ଦେଇଛନ୍ତି ଯାହାର ବନ୍ଦନା ଆଜି ଗୁରୁତ୍ୱପୂର୍ଣ୍ଣ —

ଦେବତାଏ କଲେ ଶଙ୍ଖ ଧ୍ୱନି
ଅସୁରେ ପିଟିଲେ ଡଙ୍କା
ହିମାଦ୍ରିର ପ୍ରଶମନ୍ତ ଔଷଧି ଆଲୋକେ
କବିତ କରଣୀ କଲେ ଗୁହାରେ ନର୍ତ୍ତନ
ସର୍ବହର ମଣିଷର ହେଲ ହେଲ ଆଜି
ଆରମ୍ଭ କି ଧରାରେ ପାର୍ବଣ ।
('ନାଗଭୂଷଣ' ହୁଙ୍କାର)

ସମଗ୍ର କବିତାରେ ଏ ଯୁଗର ମନୁଷ୍ୟ ଶବ ଦେଖିବାକୁ ମିଳେ । ଆଜିର ଯୁବଗୋଷ୍ଠୀ ସେ କବିତାରୁ ମଣିଷ ପ୍ରତି ମଣିଷର ଆତ୍ମିକ ସଂଯୋଗ ଓ ସହାନୁଭୂତିର ନିବିଡ଼ ସ୍ପର୍ଶ ଲକ୍ଷ୍ୟ କରିହେବ । ସମାଜକୁ ସଚେତନ ଓ ସଂଗ୍ରାମଶୀଳ କରାଇବାକୁ ଇନ୍ଧନ ଯୋଗାଇଛି । ଫଳରେ ଚେତନ ଗୋଷ୍ଠୀ ଏଇ ଭବିଷ୍ୟତ ପାଇଁ ଏ ବର୍ତ୍ତମାନର ବାଣୀକୁ ଆପଣାର କରିବାରେ ଦେଖା ଯାଉଛି । ପ୍ରଗତିଶୀଳ ଯୁବଗୋଷ୍ଠୀ ଅବଧୂତ ଗୋଷ୍ଠୀ । ଆକାଶକୁ ଶିଳ୍ପଗତ ଭାବେ ଆନ୍ତରିକତା ନେଇ ଦେଖୁଛି କିପରି ବର୍ଷାବାଦଲ ଧୂଆଁ ଧୂଳିରେ ପରିଣତ ହେଉଛି । ଶିଶୁ ପଢ଼ା ଗ୍ଲୁଡ଼୍ ପିଲ୍‌ଟରେ "ବ୍ରେକ କରୁଛି" ଲେଖୁଛି, ସେ ଉପହାର ଦେବାକୁ ଚାହୁଁଛି "ଜକ୍ ପଦଟିଏ

ଯାହା ନଷ୍ଟ ପୃଷ୍ଠେ ତରାଇ ଜଂଗଲଠାରୁ
କୋରାପୁଟ ବନେ
ଶ୍ରୀକାକୁଲମେ
ଦୂର ଷ୍ଟ୍ରହେନ୍ଦ୍ରମେ (ଅଗ୍ନି ଶର୍ମା)

କାରଣ ଆକାଶ ପକ୍ଷୀକୁ ଡେଣା ଦେଉଛି — ସାଗର ମାଛକୁ କାତି ଦେଉଛି ଯାହା ଫଳରେ ପକ୍ଷୀ ଉଡ଼ୁଛି — ମାଛ ପହଁରୁଛି । ଆଜ ମାଟି ତାର ଧୀବରକୁ ଦେଇପାରେ ନାହିଁ ଲୁଗା ଖଣ୍ଡେ ମୁଠେ ଭାତ ବଞ୍ଚି ରହିବାକୁ ।

ଗଣ ଜୀବନର ମୂଲ୍ୟାୟନ ସଂପର୍କରେ ସଚେତନ ଯୁବଗୋଷ୍ଠୀ ସମାଜରେ ଦେଶରେ ପୃଥିବୀରେ ଘଟୁଥିବା ଦ୍ରୁତ ପରିବର୍ତ୍ତନ ଓ ପ୍ରଗତିକୁ ସମର୍ଥନ ଜଣାଇବା ଓ ସେହି ସ୍ତରରେ ଆପଣାର ସ୍ୱାତନ୍ତ୍ର୍ୟ ଓ ପ୍ରତିଷ୍ଠା ଆଣିବା ଲାଗି ଅଗ୍ରଗାମୀ । ସମାଜ ମଧ୍ୟରେ ଗଣ ଭିତରେ ଥାଇ ଗୋଷ୍ଠୀଗତ କରି ପ୍ରତ୍ୟେକ ଆତ୍ମ ନିର୍ବାସନ

ଜ୍ୱାଳାରେ ଛଟପଟ ହେବାରେ ଲାଗିଛନ୍ତି ସେଥିପାଇଁ 'ଅବଧୂତ ଗୋଷ୍ଠୀ ନୂତନ ଏକ ଅଧ୍ୟାୟ ସୃଷ୍ଟି କରିବାର ସନ୍ତ୍ୱଣା ଭିତରେ ଗାଉଛି :—

ଉଦ୍ଧାମ ପ୍ରେରଣା ଧରି ମୋ ବସନ୍ତରଂଗକାର ପଣ
ଆସହେ ଆଂକିବା ଏଇ ମଣିଷର ମଣିଷତ୍ୱ
ଡ଼ାକ ଦେଇ ଅପ୍ରେଗଣ ରଣ

(ଅଖିଳପତି)

---

# ଓଡ଼ିଆ କବିତାର ସାଂପ୍ରତିକ ସ୍ୱର

**ସଦାଶିବ ଦାଶ**

୧୯୫୭ ପରର ଓଡ଼ିଆ କବିତାକୁ ବିଶ୍ୱସାହିତ୍ୟ ପରିପ୍ରେକ୍ଷୀରେ ଆଧୁନିକ ବୋଲି କୁହାଯାଇ ପାରେ । ଯଦିଓ ଏହା କାଳଭିତ୍ତିକ ତଥାପି ତତ୍‌ପୂର୍ବରୁ ରାଧାନାଥ ଶୈଳୀର ମୂଳଦୁଆ ଉପରେ, ସତ୍ୟବାଦୀ, ଓ ସବୁଜ ଯୁଗର ପ୍ରବାହ ବହି ସାରିଥିଲା । କିନ୍ତୁ ୧୯୫୭ ପରର ଆଧୁନିକତା ସାଂପ୍ରତିକ ସ୍ୱରର ମୂଳପିଣ୍ଡ ବୋଲି କହିବାକୁ ହେବ । ବର୍ତ୍ତମାନ କବିତାର ଶୈଳୀ, ଧାରା, ଆଂଗିକ, ପ୍ରତୀକ, ରୂପକଳ୍ପ, ପ୍ରଜ୍ଞା ଓ ପ୍ରୟୋଗର ଦୃଷ୍ଟାନ୍ତ ସ୍ୱାଧୀନତା ପରଠାରୁ ବିଶ୍ୱବ୍ୟାପକ । କବିତା କ୍ଷେତ୍ରରେ ସଚି ରାଉତରାୟଙ୍କ ଅତ୍ୟାଧୁନିକତାର ଆବାହକ । ରାଧାନାଥଙ୍କ ଦରବାରର, ସଚିବାବୁଙ୍କ କବିତା ୧୯୬୨; ଗୁରୁପ୍ରସାଦ ମହାନ୍ତିଙ୍କ ସମୁଦ୍ର ସ୍ନାନ, ସୀତାକାନ୍ତ ମହାପାତ୍ରଙ୍କ ଦୀପ୍ତି ଓ ଦ୍ୟୁତି, ବା ରମାକାନ୍ତ ରଥଙ୍କ 'ସନ୍ଦିଗ୍ଧ ମୃଗୟା' ପର୍ଯ୍ୟନ୍ତ ପାଶ୍ଚାତ୍ୟ ଦର୍ଶନର ବିକାଶ ଉତ୍ସବ । ଭାରତୀୟ ଦର୍ଶନ ଭିତରକୁ ଏହିମାନେ କ୍ରମେ ଟାଣି ଆଣିଲେ ୟୁରୋପୀୟ ଚିନ୍ତାର ପ୍ରଭାବ । ତାଙ୍କ ସଂଗେ ସଂଗେ ଓଡ଼ିଶାରେ ଜନ୍ମ ନେଲେ ଅଧ୍ୟାପକ, ସରକାରୀ ଅମଲା ଗୋଷ୍ଠୀରୁ ଗୋଟାଏ ପ୍ରଭାବଶାଳୀ ସାହିତ୍ୟିକ ଗୋଷ୍ଠୀ, ଆଧୁନିକ ଚିନ୍ତା କ୍ରମେ ଅତ୍ୟାଧୁନିକତାର ମୋହର ଲଗାଇଲା । ଉତ୍ତରୋତ୍ତର ଯାତ୍ରା ପଥରେ ଆଗାମୀ ମଣିଷ ସମାଜ ପ୍ରତି ଦୃଷ୍ଟି ନରଖି ଲକ୍ଷ୍ୟହୀନ ପଥିକର ଭୂମିକା କ୍ରମେ ସ୍ପଷ୍ଟ ହୋଇଗଲା । ବିଶ୍ୱର ସାଂପ୍ରତିକ

କବିତାରେ ସାମାଜିକ ସ୍ଥିତି ସମୟର ଜଳବାୟୁ ଦ୍ୱାରା ନିୟନ୍ତ୍ରିତ ବୋଲି କହିବାକୁ ହେବ । ଆଧୁନିକ ଓଡ଼ିଆ କବିତାର ଚେତନା ପ୍ରବାହରେ ଅସଂଲଗ୍ନ ଜଟିଳତା, ଅବକ୍ଷୟ ଚିନ୍ତା, କବିତାର ଗଳରୋଧ କରେ । ଏହାରି ବାହକ ସଚ୍ଚିବାବୁଙ୍କଠାରୁ ୭୨ ପର୍ଯ୍ୟନ୍ତର ସେଇ ଅତ୍ୟାଧୁନିକ ବୋଲାଉଥିବା କବିକୁଳ ପ୍ରାୟ ସମସ୍ତେ ଜୀବନର ପ୍ରତ୍ୟେକ ଭଗ୍ନାଂଶକୁ ସାଉଁଟି ଖିନ୍‌ଭିନ୍‌ କରି ଦେଖିବାର ପ୍ରୟାସ ନେଇ ସାମଗ୍ରିକ ରୂପ ଦେବାପାଇଁ ସଂକଳ୍ପବଦ୍ଧ । କିନ୍ତୁ ସ୍ୱୟଂ ସମ୍ପୂର୍ଣ୍ଣ ନୁହନ୍ତି । ଓଡ଼ିଶାର ଏଇ ଆଧୁନିକତାର ସ୍ୱରଲ କବିତା ସରଣୀ ନୁହେଁ ବରଂ ପ୍ରୟୋଗ ବୃତ୍ତିର ବନ୍ଧାବାଡ଼ରେ ଆବଦ୍ଧ ଏକ ବର୍ଣ୍ଣାଢ୍ୟ ସରୋବର । ଷଷ୍ଠ ଦଶନ୍ଧି ପରର କବିତାରେ ତରୁଣ-ମାନଙ୍କର ସଂଖ୍ୟା ସାହିତ୍ୟର ଅନ୍ୟ ବିଭାଗଠାରୁ ଯଥେଷ୍ଟ ବେଶୀ । ଓଡ଼ିଆ କବିତା ସଂଖ୍ୟାରେ ମଧ୍ୟ ପ୍ରକାଶ ପାଇଛି ସର୍ବାଧିକ । କିନ୍ତୁ କବିତା ଏମାନଙ୍କ କଲମରେ କେବଳ କଳା ହୋଇନାହିଁ । କୋଣର କାଳାନ୍ତରରେ, ସ୍ଥିତି, ବଳୟ, ସ୍ନାୟୁ ଓ ମୁହୂର୍ତ୍ତ ସବୁକୁ ନେଇ ଉଲଗ୍ନ ଆତ୍ମର ଅଣଅଭିପ୍ରାୟର ସୁର ଓ ଆବାଜରେ ଫଣଫଣ ହୋଇଛନ୍ତି । କବି ସ୍ୱପ୍ନ ବିଳାସୀ ନହୋଇ ପ୍ରୟୋଗବାଦୀ । ମଧୁସୂଦନଙ୍କ ସମୃଦ୍ଧ ମଧୁମୟ ଭଣ୍ଡ, ତା ପାଇଁ ରୁକ୍ଷ, ଧୂସର ପ୍ରଗଟାରେ ରୂପାନ୍ତରିତ । ଏଇ ସମୟରେ ଓଡ଼ିଶାର ପ୍ରତ୍ୟେକ ପ୍ରାନ୍ତରୁ ସ୍ୱତନ୍ତ୍ରୀୟ ଧାରାର ସମ୍ମିଳିତ କୋରସ ଷଷ୍ଠ ଦଶକ ପରେ ସଚ୍ଚିବାବୁଙ୍କଠାରୁ ଆରମ୍ଭ ହୋଇ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଗୁରୁପ୍ରସାଦ ମହାନ୍ତି, ଭାନୁଜୀରାଓ, ଦେବଦାସ ଛୋଟରାୟ, ହରପ୍ରସାଦ ଦାସ, ଶୁରେନ୍ଦ୍ର ମୋହନ ଦାସ, ନୃସିଂହକୁମାର ରଥ, ଚଣ୍ଡିଚରଣ କରଙ୍କ ଦ୍ୱାରା ଡିଲାନ ଥମାସ, ବା ଏଲନ୍ ଗ୍ରୀନ୍ସବର୍ଗଙ୍କ ପର୍ଯ୍ୟନ୍ତ ଯାଇଥିଲେ ବେଳେ ବ୍ରଜନାଥ ରଥ, ରବିସିଂ, ମନମୋହନ

ମିଶ୍ର, ଅନନ୍ତ ପଟ୍ଟନାୟକ ଇତ୍ୟାଦିଙ୍କ ଦ୍ୱାରା ବିଦ୍ରୋହୀ ବର୍ଣ୍ଣା କଣ୍ଠରେ ପରିଣତ ହୋଇଛି ।

୪୭ ପରଠୁ ଷାଠିଏ ଯାଏ ଓଡ଼ିଆ କବିତାର ମୂଳଦୁଆରେ ଯେଉଁମାନେ ଥିଲେ ହୁଏତ ଷାଠିଏ ପରେ ସେମାନଙ୍କ ଭିତରୁ କିଛିର ସ୍ୱାକ୍ଷର ଦେଲେ ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ଜ୍ଞାନୀନ୍ଦ୍ର ବର୍ମା, ବ୍ରଜନାଥରଥ, ଚିନ୍ତାମଣି ବେହେରା ଇତ୍ୟାଦି । ସଚ୍ଚିଦାନନ୍ଦ ରାଉତରାୟ ଏ ସମସ୍ତଙ୍କଠୁ ଏକ ବ୍ୟତିକ୍ରମ । ତାଙ୍କ କବିତାର ଧାରା ବିଭିନ୍ନ ପ୍ରକାର ଚିନ୍ତାକୁ ନେଇ ଗଡ଼ାଣି ଓଠାଣି ଦେଇ ବହି ଆସିଛି । ତାଙ୍କର ଧାରା କେତେବେଳେ ପଶ୍ଚିମ ଚିନ୍ତାର ପ୍ରତୀକବାଦ ଆଡ଼କୁତ କେତେବେଳେ ଘନ ଜନତାର ହା ହୁତାଶମୟ ଜୀବନଧାରା ଆଡ଼କୁ । ଷାଠିଏ ପରର ତରୁଣ ମନରେ ଅଂଗୀକାର ଯେତିକି ନଥିଲା ତାଠାରୁ ଅଧିକ ଥିଲା ବ୍ୟକ୍ତିଗତ ହା-ହୁତାଶମୟତାର ଚରିତ ପ୍ରକାଶ । ନିଜର ଜୀବନଧାରା ବିରୁଦ୍ଧରେ ଶୈଳୀର ଅଯଥା ଘଟାଟୋପ ଦେଇ ନିଜ ବିରୁଦ୍ଧରେ ଏକ ପ୍ରତିବାଦ । କିନ୍ତୁ ସେମାନେ କ'ଣ ଗୁହ୍ଣ ଚିନ୍ତା ତାହା ନିର୍ମଳ ଭାବେ ପ୍ରକାଶ ପାଇ ପାରିଲାନି, ସତେ ଯେପରି ଏଇ ପ୍ରୟୋଗବାଦୀ, ପ୍ରତୀକବାଦର ପୂଜାରୀମାନଙ୍କର ଅସମର୍ପିତ ନିଷ୍ଠାର ପ୍ରତିନିଧି । ସାରା ବିଶ୍ୱର କବିମାନେ କମିଟ୍‌ମେଣ୍ଟକୁ ଲେଖାର ମାର୍ଗ ରୂପେ ବରଣ କରୁଥିଲା ବେଳେ, ବିଶ୍ୱର ସମାଜ ବ୍ୟବସ୍ଥା କମିଟ୍‌ମେଣ୍ଟ ପ୍ରକାଶ କରିବାକୁ ଗୌଣ କରି ଓଡ଼ିଶାର ଷଷ୍ଠ ଦଶକ ପର'ର କବିମାନେ ନିଜର ବ୍ୟକ୍ତିଗତ କଥା କହିବାରେ ବ୍ୟସ୍ତ ରହିଲେ । ତେଣୁ ସଫଳତାର ନିମ୍ନତମ ସୋପାନ ଅତିକ୍ରମ କରିବା କଷ୍ଟକର ହୋଇ ପଡ଼ିଲା । କବିତା ଏଠ ଧାରକରା ଫର୍ମୁଲା ଚଳାଇବାର ଗଣିତ କକ୍ଷରେ ପରିଣତ ହୋଇଗଲା ।

କବିତାରେ ବୈଚିତ୍ର୍ୟ ପ୍ରୟୋଗବୃତ୍ତି, ଅନ୍ତ ମୁଖୀତାର ବୃଦ୍ଧି, ଜୀବନର ମୂଲ୍ୟକୁ ଆପେକ୍ଷିକ ଜାଣି, ଜଗତରେ ଜୀବନର ମୂଲ୍ୟକୁ ବିସର୍ଜିବାର ପ୍ରମାଦ ସାଂପ୍ରତିକ ସ୍ୱରର ଏକ ବୈଶିଷ୍ଟ୍ୟରେ ପରିଣତ ହୋଇଛି । ଓଡ଼ିଶାର କବିତା କୁଂଜରେ ବହିର୍ଭାଗତ ସାହିତ୍ୟର ବିଶେଷ କରି ଇଂରେଜୀ ସାଆନ୍ତଆ ଦର୍ଶନର ପ୍ରଭାବ ଯଥେଷ୍ଟ ପଡ଼ିଛି । କଳା ସାହେବୀ କାଇଦା .ବେଶ୍ ଆଡ଼ାଁ ଜମାଇଛି ଆମର ସରକାରୀ କଳ ଭିତରର ଉଚ୍ଚ ଆସନରେ ଥିବା କବିକୁଳଙ୍କ ମଧ୍ୟରେ । ସାଆନ୍ତଆ ଢଂଗର ଅଳନ୍ଧୁ ଲଗା ମନ ଭିତରେ ନିଜକୁ ସଂକୁଚିତ କରି ଆତ୍ମ ପ୍ରକାଶର ବିଡ଼ମ୍ବନାରେ ବିଡ଼ମ୍ବିତ କରାଯାଇଛି ବର୍ତ୍ତମାନର ସାହିତ୍ୟିକ ଧାରାକୁ । 'ବୌଦ୍ଧିକତା'ର ଅମଡ଼ା ଫାଶୀ କାଠରେ ବୁଝାଇ ଦିଆ ଯାଉଛି ବର୍ତ୍ତମାନର କବିତାକୁ । ଓଡ଼ିଆ କବିତାରେ ବାହାର ପବନର ମୌସୁମୀ ଯେଉଁମାନେ ବୁହାଇଛନ୍ତି ସେମାନଙ୍କ ଭିତରୁ ମୁଖ୍ୟତ ରମାକାନ୍ତ ରଥ, ଗୁରୁପ୍ରସାଦ ମହାନ୍ତି, ଭାନୁଜୀରାଓ, ସୀତାକାନ୍ତ ମହାପାତ୍ର, ବିନୋଦ ନାୟକ, ବେଣୁଧର ରାଉତ, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ପ୍ରମୋଦ ମହାନ୍ତି, କମଳାକାନ୍ତ ଲେଂକା, ପ୍ରସନ୍ନକୁମାର ମିଶ୍ର, ସୌଭାଗ୍ୟ ମିଶ୍ର, ହରପ୍ରସାଦ ଦାସ, ଦିଲ୍ଲୀପ ଦାସ, କୈଳାଶ ଲେଙ୍କା, ବ୍ରହ୍ମୋତ୍ରୀ ମହାନ୍ତି, ଦୀପକ ମିଶ୍ର, ନୃସିଂହକୁମାର ରଥ, ପରେଶ ରାଉତ, ମୃତ୍ୟୁଞ୍ଜୟ ନାରାୟଣବର୍ମା, ମୁରାରୀମୋହନ ରାଜ୍, ଦୁର୍ଗାଚରଣ ପରିଡ଼ା, ପ୍ରତିଭା ଶତପଥୀ, ହରିହର ମିଶ୍ର, ବଂଶୀଧର ଷଡ଼ଙ୍ଗୀ, ଗଗନ ମିଶ୍ର, ଚନ୍ଦ୍ର ମହାନ୍ତି, ସାନନ୍ଦଦାସ ପଟ୍ଟନାୟକ, ଧନୁ ଖଣ୍ଡିଆ, ଦେବଦାସ ଛୋଟରାୟ, ଯୋଗୀନ୍ଦ୍ର, ବାହକ, ରାମକୁମାର ଅଗ୍ରୱାଲ ଇତ୍ୟାଦିଙ୍କୁ ଆଲୋଚନା ଭିତରକୁ ଅଣା ଯାଇପାରେ । କବିତା ଏମାନଙ୍କ ଦ୍ୱାରା ଅଣନିଶ୍ୱାସୀ

ହୋଇଛି । ସମାଜ ମାନସକୁ ବିଭ୍ରାନ୍ତ କରି କବିତାକୁ ଜନମାନସ-ଠାରୁ ଦୂରେଇ ନେଇଛି 'ଅଂଧକାର' ରୂପୀ ଚିନ୍ତା ବୈକଲ୍ୟର ଅଂଧକୂପରେ ପଡ଼ିଯାଇଛି କବିତା । ସଚ୍ଚିଦାନନ୍ଦଙ୍କ ପ୍ରବର୍ତ୍ତିତଧାରାର ପୃଷ୍ଠପୋଷକ ପ୍ରୋକ୍ତ କବିଗୋଷ୍ଠୀ ଓଡ଼ିଆ କବିତାକୁ ବ୍ୟକ୍ତିଗତ ଚେତନାର ଦଂଶନରେ ଅଧିକନ୍ତୁ ବର୍ଷ ବର୍ଷ ଧରି ଦଂଶନ କରିଛନ୍ତି । ବ୍ୟକ୍ତିଗତ ନିସଂଗ ଚେତନାର ଦେହଳୀରୁ ଉଠି ନପାରି ବ୍ୟକ୍ତିର ବିକଳାଂଗ ଆବେଗକୁ ମନର ରୁଷ ଚଉତରାରେ ବସାଇ ଦେଇ ମୋତେ ଗ୍ରହଣ କର···ମୋତେ ସ୍ୱୀକାର କର" ଚିତ୍କାରରେ ପରିଣତ ହୋଇଛି ଏମାନଙ୍କ କବିତା । ସରକାରୀ କଳର ଯୂପକାଷ୍ଠରେ ବନ୍ଦୀ ହୋଇଥିବା ଏମାନଙ୍କର ଜୀବନ ମୁକ୍ତିକାମୀ ଅଭାବୀ ଜନଗଣ ଆଗରେ ସାହିତ୍ୟକୁ ବୁଢ଼ିଆଣୀ ଜାଲରେ ପରିଣତ କରିଛି । ବୌଦ୍ଧିକତାର ପୁନଃ ସଂଘଣ୍ଡକରଣ ଜନ୍ମ ସଂଘଣ୍ଡର ସୂଚନା ସୃଷ୍ଟି କରିଛି । ସଚି ରାଉତରାୟଙ୍କ ପରେ ରମାକାନ୍ତ ରଥ ବା ଗୁରୁପ୍ରସାଦ ମହାନ୍ତିଙ୍କ ପରର ପାଶ୍ଚାତ୍ୟ ଦର୍ଶନର ପୃଷ୍ଠପୋଷକ ତରୁଣମାନଙ୍କ କବିତା ସାଧାରଣ ପାଠକ ପାଖରେ ଶବ୍ଦ ସଜ୍ଜିତ ବାଗ୍ ଆଡ଼ମ୍ବରର ପ୍ରଦର୍ଶନୀ ବା ଆଧୁନିକ ରଂଗବୋଳା ଅବୁଝା କଳାକୃତି । କବିତା ସାଜିଛି ଗୋଟାଏ ଇମ୍ପ୍ରେସନ ··· ଯାହାର ଭୂମିକା ନାହିଁ ··· ମେରୁଦଣ୍ଡ ନାହିଁ ପରାପର ମୂଳଦୁଆ ନାହିଁ, ଅନ୍ତ ମନନର ଅସଂଗତି, ବ୍ୟକ୍ତିଗତ ଜ୍ୱଳନ, ଶୈଳୀସର୍ବସ୍ୱ ପ୍ରକାଶ ଭଂଗୀ, ନିସଂଗ ନିସହାୟ ବ୍ୟକ୍ତିତ୍ୱକୁ କବିତାରେ ପ୍ରତିଷ୍ଠା କରିବାକୁ କବିକୂଳ ପ୍ରୋକ୍ତ ଚେଷ୍ଟା କରିଛନ୍ତି । ସେମାନଙ୍କ କାବ୍ୟ ପୁରୁଷରେ, ନୂତନ ପ୍ରତୀକ, ରୂପକଳ୍ପ, ଓ ପ୍ରୟୋଗ କବିତାକୁ ବୀଜ ଗଣିତରେ ପରିଣତ କରି ଦେଇଛି । କବିତା ଯେ ସବୁଦିନେ ଓଡ଼ିଆଣୀ ହୋଇ ରହୁ ତାହା କେହି

ଚାହେଁନା··· କିନ୍ତୁ କବିତା ଲେଖାରେ ପ୍ରଗତି ଆସୁ ତାହା ଚାହେଁ ଓଡ଼ିଆ ପାଠକ । କିନ୍ତୁ ଏମାନଙ୍କ ହାତର କବିତା ବିକଟ ବା ବିକର୍ଷଣ ପିଛିଲେ ପାଠକ ରୁଚିକୁ ହତ୍ୟା କରାଗଲା ବୋଲି ଭାବିବାକୁ ପଡ଼ୁଛି । ଭଞ୍ଜ, ସାମନ୍ତ ସିଂହାରଙ୍କ ଯୁଗୀୟ ସାତ୍ତ୍ୱିକତା ନାହିଁ ତାହା ନ ଆସିବା ସ୍ୱାଭାବିକ । ଭଞ୍ଜ ସମୟର ଗଣଜୀବନ ଥିଲା ସ୍ଥିତି ଧର୍ମୀ । ଉଚିତବୋଧ ଥିଲା ଦଳେ ଲୋକ ପ୍ରାଚୁର୍ଯ୍ୟରେ ବଞ୍ଚିବେ ଓ ଆଉମାନେ ସମାଜରେ ଅବହେଳିତ ରହିବେ । ରାଜୁଡ଼ା ଶାସନର ସୌଖିନ ବିଳାସ ଥିଲା ସେ ସାହିତ୍ୟ । ତା ବୋଲି ଯେ ଆଜିର ସାହିତ୍ୟ ସରକାରୀ କଳରେ ସୃଷ୍ଟି ହୋଇଥିବା ବୁଦ୍ଧିଜୀବୀମାନଙ୍କର ବ୍ୟକ୍ତିଗତ ପ୍ରତିଷ୍ଠା କାମନାର କୁହୁକରେ ପରିଣତ ହେଉ ଏକଥା କେହି ଚାହେଁ ନା । ସେଇଥି ପାଇଁ ଏମାନଙ୍କ କବିତା ବିରୁଦ୍ଧରେ ପ୍ରତିବାଦ । ଗ୍ରହଣ ନକରିବାକୁ ପାଠକମାନଙ୍କର ହେୟ ଭାବ । ଷାଠିଏ ପରର ୟୁରୋପୀୟ ଚିନ୍ତାର କବି ମାନସରେ ଗଣ ଜୀବନର ସ୍ଥାନ ନାହିଁ । ଏଣୁ ପାଠକ ସେମାନଙ୍କୁ ପ୍ରଶ୍ନ କରୁଛି କବିର ଅଂଗୀକାର କ'ଣ ଦେହସର୍ବସ୍ୱ···ବ୍ୟକ୍ତିଗତ ପ୍ରଳାପ ସେଥିରେ ପାଠକର କିଛି ନାହିଁ । ତେଣୁ ପାଠକ ବ୍ୟକ୍ତିର ଯନ୍ତ୍ରଣାକୁ ବ୍ୟାପକ ବୋଲି ଗ୍ରହଣ କରିବ ବା କାହିଁକି ? ସେ ସାମନ୍ତ-ସିଂହାରଙ୍କ ବିଦଗ୍ଧ ଚିନ୍ତାମଣି, ଭଞ୍ଜଙ୍କ 'ବୈଦେହୀଶ ବିଳାସ' ପଢ଼ି ବିନୋଦ ନାୟକଙ୍କ 'ସପ୍ତସ୍ୱର' ଜ୍ଞାନୀନ୍ଦ୍ରଙ୍କ ଜୟଦେବର ନୂତନ କବିତା ବା ରମାକାନ୍ତ ରଥଙ୍କ 'ସନ୍ଦିଗ୍ଧ ମୃଗୟା' ପଢ଼ିବ କାହିଁକି ? ପାଠକ କବିତାକୁ ଆଗରେ ରଖି ପଢିବେ କବିକୁ ନୁହେଁ ··· ସେ ଚାହେଁ କବିତା···ଭଞ୍ଜ ବା ରମାକାନ୍ତ ରଥ ତା ଆଗରେ ଗୌଣ ।

ଓଡ଼ିଶାର ସାମ୍ପ୍ରତିକ ସ୍ୱର ନିଜ ପାଖରେ ଯେତେ ଆନ୍ତରିକ, ପାଠକ ପାଖରେ ସେତିକି ଅର୍ଥହୀନ । ଷଷ୍ଠ ଦଶକର ଉଗ୍ର ଯୌନ ଚେତନା, ଦେହ ସର୍ବସ୍ୱଧାର । ଯେତେ ଉଗ୍ର ତାହା କ୍ରମେ କ୍ରମେ ସେତେଶୀଘ୍ର ଦୁର୍ବୋଧର ଗଳିତ ବ୍ୟାଧିରେ ସମୃଦ୍ଧ । ସଚ୍ଚିଦାନନ୍ଦ ରାଉତରାୟଙ୍କ 'ଦ୍ରୌପଦୀର ଶାଢ଼ୀ' ବିନୋଦ ନାୟକଙ୍କ ସିଗ୍‌ସ୍ୟୁପ, ବ୍ରଜନାଥ ରଥଙ୍କ 'ଅଥକୃଷ୍ଣସର୍ପକଥା' ଦୀପକ ମିଶ୍ରଙ୍କ 'ନିଛକ ଘୁଇରେ ଶାଢ଼ୀର ନାଚ' କୈଳାଶ ଲେଙ୍କା 'ପ୍ରେମକଥା' ସୁରେନ୍ଦ୍ର ମୋହନ ଦାସ "ରାତିଅଧ ପରର ପ୍ରାର୍ଥନା" ଚଣ୍ଡୀଚରଣଙ୍କ ଠାରୁ "କ୍ରମଶଃ ବଦାସ୍ତ"...ଓ ଅନାମ ଗୋଷ୍ଠୀର କବିତାରୁ ଏହି ବ୍ୟାଧିତ ମନର ଦେହବାଦୀ ଆତ୍ମପ୍ରକାଶ ଖୁବ୍ ସ୍ପଷ୍ଟ । ବିଶେଷ ଭାବେ ଷଷ୍ଠ ଦଶକରେ ପ୍ରକାଶ ପାଇଥିବା ପ୍ରସ୍ୱେଡ଼ୀସ୍ଥ ଚନ୍ଦ୍ରାହାର ଜଦ୍ରୁଧ ଗୋଷ୍ଠୀ କବିତା ଜନମାନସକୁ ଅଧିକ ଅତିଷ୍ଠ କରେ । ଏମାନେ ଯୌନତତ୍ତ୍ୱର କାବ୍ୟକୁ ସଜା ଦେବାକୁ ଯାଇ ଅଶ୍ଳୀଳତାର ଗଳିତ ବ୍ୟାଧିରେ. ସମାଜ ସମ୍ମୁ ରହିତ, ଅନୁଭୂତିର ଶାଣିତ ସ୍ପର୍ଶରେ ଉପାଣିତ ନ ହୋଇଥିବା ସ୍ପଷ୍ଟ । ଆନ୍ତରିକ ଉପଲବ୍ଧି, ବନ୍ଧନ ମୁକ୍ତ ହେବାର ଉନ୍ମାଦନା ଭିତରୁ ସାମ୍ପ୍ରତିକ ସ୍ୱର ବିରୁଦ୍ଧରେ ସ୍ୱତନ୍ତ୍ର ତରୁଣ କବିଗୋଷ୍ଠୀ ସ୍ୱର ଉତ୍ତୋଳନ କରିବା ସ୍ୱାଭାବିକ । ତେଣୁ ବ୍ରଜନାଥ ରଥଙ୍କ ଭାଷାରେ "ତେଣୁ ଆଜି ଆସ ବନ୍ଧୁ...ନିର୍ଦ୍ଦିକାରେ ଦେହ ମନ ନେଇ...ଆମେ ଆମ ଲୁଗା ଖୋଲି, ସେମାନଙ୍କ ନଗ୍ନତା ଢାଙ୍କିବା ... ହୃଦୟର ମନୋରମ ଚିହ୍ନକୁ ଆଙ୍କିବା" । ୧୯୬୮ ରେ ଅକବିତା, (ସମ୍ବଲପୁରର) କେତେକ ଯୁବକଙ୍କ ପ୍ରତିଷ୍ଠା ପାଇବାର ଉନ୍ମାଦନା ଭିତରୁ ଜନ୍ମ ନେବା ପରେ ଏସ୍ପ'ର 'ଅନାମ' ଓ କ୍ରୁଦ୍ଧର 'ଅଦ୍ଭୁତ୍ପା' ମାନେ ଅଶ୍ଳୀଳତା ଦୂର କରିବାକୁ ଯାଇ ଅଶ୍ଳୀଳତାର ପାପ ଫଳରେ ଗାଧୋଇ ପଡ଼ିଲେ । ଯୁବକ

ଯୋଗୀ ଯୋଗ ସାଧନାର ପ୍ରାଥମିକ ସ୍ତରରେ 'ଜ୍ଞବଣୀ'ର ଲାବଣ୍ୟ ଗ୍ରହଣ କରି ଦେଖିଲେ ସ୍ଖଳନ ଆମ୍ଭିକା ପରି ଏମାନଙ୍କର କବିତାରେ ସ୍ଖଳନର ପ୍ରାଣ ପ୍ରାଚୁର୍ଯ୍ୟ ମିଳିଲା ବେଶୀ । ସେମାନଙ୍କର କୈଫିୟତ ଥିଲା "ସମାଜ ସ୍ଖଳିତ ତେଣୁ ଆମେ ତା ଦେଖାପାଇଁ ବାଧ୍ୟ" । ରମାକାନ୍ତ ରଥ ଇତ୍ୟାଦି ସଚିବାବୁଙ୍କ ପରେ ଓଡ଼ିଶାରୁ ଯୁରୋପୀୟ ଚିନ୍ତାର ନୂଆ ସଂସ୍କରଣ ଆରମ୍ଭର ଚେଷ୍ଟାରେ ଥିଲାବେଳେ ଏମାନେ ତାଙ୍କ ବିରୁଦ୍ଧରେ ବିଦ୍ରୋହ କଲେ । କବିତା ସରକାରୀ ଶୀତତାପ ନିୟନ୍ତ୍ରିତ ବଂଗଳାରେ କହ୍ନଧନ ଅଣନିଶ୍ୱାସୀ ହେବା ପରେ ଭାବିଥିଲା ଏମାନଙ୍କ ହାତରେ ହେବ ମୁକ୍ତର କବିତା । କିନ୍ତୁ ପ୍ରତିବାଦର ସ୍ୱରକୁ ରମାକାନ୍ତ ଗୋଷ୍ଠୀର କବିମାନେ ମାଡ଼ିମକଚି ଆଗେଇ ଚାଲିଲେ । ବାଧ୍ୟହୋଇ ଏମାନେ ସେମାନଙ୍କ ସଙ୍ଗେ ସାଲିସ୍ କଲେ । ଅଧ୍ୟୟନର ସ୍ୱଳ୍ପତା, ନିଷ୍ଠାର ଅଭାବ, ସଙ୍କଳ୍ପର ଦୃଢ଼ତା ନଥିବାରୁ ପଛେଇ ଗଲେ ରମାକାନ୍ତ ବିରୁଦ୍ଧ ସ୍ୱରର ପ୍ରତିବାଦୀ କବିଗଣ । ଓଡ଼ିଶାର ମାଟିରୁ ପାଠକମାନେ ଯେତେ ପରିମାଣରେ ଅସ୍ୱୀକାର କଲେ ଯୁରୋପୀୟ ଚିନ୍ତାର ସାଧକମାନଙ୍କୁ; ଠିକ୍ ସେତେ ସେତେ ଅଧିକା କବି ପାଠକମାନଙ୍କୁ ବଖାଣିତ କରି ନିଜ ଘରଭ.ଜବାଟ ଟଙ୍କା ଦେଇ ସେ ପ୍ରକାରର କବିତା ସେତେ ବେଶୀ ଉତ୍ପାଦନ କଲେ । ଗୋଟିଏ ଦୃଷ୍ଟାନ୍ତ ଭିତରୁ ଏମାନଙ୍କ ସ୍ୱରର ଜଟିଳତା ସହଜରେ ବୁଝିଯାଇ ହେବ । କବି, କବିତା ଓ କବିତ୍ୱର ସାବଲୀଳ ଛଟାଠାରୁ କେତେ ଗଦ୍ୟମୟ ଏମାନଙ୍କ କବିତାର ପ୍ରାଣ । ସେ ଗଦ୍ୟର ଭୂମିକା ନାହିଁ କି ମେରୁଦଣ୍ଡ ନାହିଁ । ନାହିଁ ସେଥିରେ ଜନଜୀବନର ସତ୍ୟ ! ସନ୍ଧ୍ୟା-ବେଳର ଦୃଶ୍ୟ ଦେବାକୁ ଯାଇ ରମାକାନ୍ତ ରଥ କବିତାରେ ପ୍ରକାଶ କଲେ "ଗକ୍ଷସୀର ପଟା କାଗଜରେ ତୀକ୍ଷ୍ଣ ସ୍ତନାଗ୍ରରେ

ରକ୍ତର ଛିଟିକା ଓ·ତାର ତମ୍ବାବର୍ଣ୍ଣର ବାଳରେ ଲଣ୍ଠାରି ରଂଗର କୋଠାରେ ଜଳୁଥିବା ବଲ୍‌ବ୍‌ର ଆଲୁଅରେ ଚକ୍ ଚକ୍ କରେ ।" ଏହିପରି ଶହ ଶହ ଉଦାହରଣ ଷଷ୍ଠ ଦଶନ୍ଧିର କବିତାରୁ ଖୋଜିଲେ ମିଳିବ । ଗୁଡ଼ାଏ ବିକ୍ଷିପ୍ତ ଚିନ୍ତାର ଅସଂଗତ ସଂଯୋଜନା ହେଲା ଓ ଉପଯୁକ୍ତ ଆଲୋଚନାର ସ୍ବୁକ ପ୍ରଚାର ଦେବାକୁ ଓଡ଼ିଶାରେ ବେଶୀ କେହି· ଆସିଲେ ନାହିଁ । ସମାଲୋଚକ ଓ ସମାଲୋଚନା ଠାରୁ ଦୂରରେ ରହି ପିତୃମାତୃହୀନା ଲଗାମ ଛଡ଼ା ଉଚ୍ଛୃଙ୍ଖଳ ନାରୀରେ ପରିଣତ ହୋଇଗଲା କବିତା ଏମାନଙ୍କ ହାତରେ । ପରୀକ୍ଷା ନିରୀକ୍ଷା ନାମରେ ଓଡ଼ିଶାର ପାଠକମାନଙ୍କୁ ୟୁରୋପୀୟ ଚିନ୍ତାର ଭାଲୁ ଧରେଇ ସମସାମୟିକ ଆନ୍ତର୍ଜାତିକ ଧାରାର ଗୋଡ଼ାଣିଆ ଆମ୍ବ ପ୍ରକାଣ୍ଡରେ ପରିଣତ କଲେ ଓଡ଼ିଆ କବିତାକୁ । ଯେଉଁ କେତେକ ସମାଲୋଚକ ଥିଲେ ସେମାନେ ସରକାରୀ କଳର ପ୍ରଶାସନିକ ମୁଖ୍ୟ ଭାବରେ ଥିବା କବିମାନଙ୍କୁ ଖୋଲ୍‌ଖୋଲା ପଦବୀ ମର୍ଯ୍ୟାଦାର ଅବମାନନା ଭୟରେ ସମାଲୋଚନା କରି ପାରିଲେ ନାହିଁ । ବରଂ ସେମାନଙ୍କ ସ୍ୱରୂପକୁ ଘୋଡାଇବାକୁ ଚେଷ୍ଟା କରି ଛାଗଳ ଉପରେ ସିଂହର ଚମଡ଼ା ଘୋଡ଼ାଇଦେଲେ । ସେଇ କବିତା ଗୁଡ଼ିକର ଓ ତା ଉପରେ ପ୍ରଶାସନିକ ଗୋଷ୍ଠୀକୁ ସୁହାଉଥିବା ସମାଲୋଚନାକୁ ଛପାଇବାରେ ସୁବନ୍ଦୋବସ୍ତ କଲେ ଓଡ଼ିଶାର କେତୋଟି ମାସିକ ପତ୍ରିକା । ଓଡ଼ିଶୀ ପାଠକର ମତକୁ ଦଳଚକଟି ଦେଇ ଆନ୍ତର୍ଜାତିକ ହେବାର ଦିବା ସ୍ୱପ୍ନରେ ମଜଗୁଲ ଓଡ଼ିଆ ସାହେବୀ କବିମାନଙ୍କ କବିତା ସହରିଆ ସୌଖିନ ବିଳାସରେ ପରିଣତ ହେଲା । ମନମୋହନ ମିଶ୍ର, ଅନନ୍ତ ପଟ୍ଟନାୟକ, ରବିସିଂଙ୍କ କବିତା ପରି ପାଠକ ପାଖକୁ ଆନ୍ତରିକତାର ସ୍ୱାକ୍ଷର ଦେଇ ପାରିଲାନି ରମାକାନ୍ତ ରଥ, ବା ସୀତାକାନ୍ତ ମହାପାତ୍ରଙ୍କ କବିତା ·

ଗଣ୍ଡାର ଅନ୍ତର୍ଦୃଷ୍ଟିର ଅଭାବ ଥିଲା, କୃଷକ ନିଜ ଜମିକୁ ଚାହିଁ ଚାଷ କରିବା ବା କେଉଁ ଫସଲ କଲେ ଭଲ ହେବ ସେଇଟା ପ୍ରଥମେ ଦେଖିବା ଉଚିତ ଥିଲା । ଓଡ଼ିଶାର ମାଟି ପାଣି, ପବନର ସ୍ୱରୂପକୁ ନବୁଝି ଭଲ ଲାଭଜନକ ଫସଲ ବୋଲି ଅନ୍ୟ ଦେଶର ଫସଲ ଲଗେଇଲେ ଯା' ହେବା କଥା ସେଇଆ ହିଁ ହେଲା କବିତାର ଅବସ୍ଥା । ସୀତାକାନ୍ତ ମହାପାତ୍ର ହିନ୍ଦୁ ଓ ପାଶ୍ଚାତ୍ୟ ଦର୍ଶନରେ ସମନ୍ୱୟ ଆଣିବାକୁ ଯାଇ କେତେକ ପରିମାଣରେ ଇଲିୟଟଙ୍କ ନିକଟତର ହେଲେ ବା ଅଷ୍ଟ୍ରପଦୀର କବିତା ମାନବ ସଭ୍ୟତାର ରୁକ୍ଷ କରୁଣ ଅବସ୍ଥାର ଚିତ୍ର ଦେଲେ । କିନ୍ତୁ ରମାକାନ୍ତ ରଥଙ୍କ ସିମ୍ବଲ, ମେଟାଫର, ମିଥ ସବୁ ଗୁରୁପ୍ରସାଦଙ୍କ କାଳପୁରୁଷ, ଓଡ଼ିଆ କବିତାକୁ କି ସଜ୍ଜା ଦେଲା ତା'ର ସ୍ୱରୂପ ଉତ୍ତର ଆଲୋଚକଗଣ ବେଶ୍ ଭଲଭାବେ ମାପଚୁପ କରିପାରିବେ । ଏଠାରେ ଗୋଟିଏ ନିଷ୍ଠୁର ସତ୍ୟକୁ ଉପସ୍ଥାପିତ କରିବାକୁ ହେବ । ଏମାନଙ୍କର ବିଫଳତା ଓଡ଼ିଆ ସାହିତ୍ୟକୁ ଯେତେ ପରିମାଣରେ ବିଡ଼ମ୍ବିତ କରିଛି ଠିକ୍ ସେଇ ବିଡ଼ମ୍ବନାର ଗାଁଉଁଶ ଭିତରୁ ଏକ ଅଗ୍ନିସ୍ନାତ୍ ତରୁଣ କବିକୁଳ ଜନ୍ମ ନେଇଛନ୍ତି । ତରୁଣତମ ଓଡ଼ିଆ କବିର ଆତ୍ମା ସମାଜ ଆଡ଼କୁ ଚାଲିଛି । ସେ ଅନୁଭବ କରିପାରିଛି ଏମାନଙ୍କ ବିଫଳତାର ଅସଲ ସତ୍ତା କେଉଁଠି ନିହିତ ? ଷଷ୍ଠ ଦଶକର ଏଇ ରୋମାଣ୍ଟିକ ଭାବଧାରା ୧୯୬୫ ପରଠାରୁ କେତେକ ଆଧ୍ୟାତ୍ମିକ ବିପ୍ଳବୀ ତରୁଣମାନଙ୍କ ମନଙ୍କ ଦ୍ୱାରା ଓଡ଼ିଶାରୁ କ୍ରମେ ନିର୍ବାସିତ ହେବାକୁ ବସିଲାଣି । ବର୍ତ୍ତମାନଯାଏ ଏହାର ପ୍ରାଚୁର୍ଯ୍ୟ ଅଛି କିନ୍ତୁ ଏକନାୟକତ୍ୱ ନାହିଁ । ଏଇ ସ୍ୱର ରଘୁନାଥ ଦାସ, ସଚ୍ଚିଦାନନ୍ଦ ରାଉତରାୟ, ବ୍ରଜନାଥ ରଥ, ମନମୋହନ ମିଶ୍ର, ଅନନ୍ତ ପଟ୍ଟନାୟକ ଠାରୁ ସୃଷ୍ଟି ହୋଇଥିଲା । ବିଶେଷତଃ ସଚିବାବୁଙ୍କ ବାଟ ଭାଂଗିବା

ପରେ କ୍ଷୀଣ ହେଲା ଜନ ଯନ୍ତ୍ରଣାର ସ୍ୱର । ସେହିଁ ସଚ୍ଚିଦାନନ୍ଦ ଓଡ଼ିଶାରେ ଥିଲେ ଗଣକବି ସେ ଆଜି କେଶୋରରାମ କଟନ୍ ମିଲ୍‌ର ଗଣମାରଣ ଯନ୍ତ୍ରା ଭିତରେ ନିଜର କବିତାର ଧାରାକୁ ପେଶୀ ପକାଇଲେ । ଜୀବନ ଯାତ୍ରା ଓ କବିତା ମଧ୍ୟରେ ଦ୍ୱନ୍ଦ୍ୱ ଦେଖାଗଲା । ଦୁଇଟି ଲାଇନ ଧରି କବି ବାଧ୍ୟ ହେଲା ସାଆନ୍ତ୍ରଆ ଦଣ୍ଡଛତ୍ର'ର ଢିଭିଭୂମୀ ସୁରେନ୍ଦ୍ରପୀସ୍ର ଚନ୍ଦ୍ରାର ସମୁଦ୍ରରେ ଆତ୍ମହତ୍ୟା କରିବାକୁ । ଗଣ କବିତା କ୍ଷେତ୍ରରୁ ଗଣକବି ସଚିବାବୁଙ୍କ ମୃତ୍ୟୁ ପରେ ବାସ୍ତବ ସତ୍ୟର ମୁଖା ଖୋଲିବାକୁ କେହି ରହିଲେ ନାହିଁ । ମଣିଷ ଯେତେବେଳେ ଯନ୍ତ୍ରଣାର ପୃଥିବୀରୁ ଅସୁନ୍ଦର ପୃଥିବୀକୁ ଯାଏ ସେତେବେଳେ ସେ ଛଳନା କରେ ଅସୁନ୍ଦର ପୃଥିବୀରେ ଛଳନାର ମାତ୍ରା ବେଶୀ ହୋଇ ଥିବାରୁ ମଣିଷ, ସମାଜକୁ ପ୍ରବଂଚିତ କରିବାକୁ ଶିଖେ । ନିଜର କବିତା ସୃଷ୍ଟିର ଯେଉଁ ସୃଷ୍ଟିଶୀଳତା ଥାଏ ତାକୁ ଯେ କୌଣସି ପ୍ରକାରେ ପ୍ରକାଶିତ କରିବାକୁ ଚେଷ୍ଟା କରେ । ନିଜର ଆହାର ବ୍ୟବହାରରେ ଆଂଚ ନଆଣି ନିଜ ଉପରିସ୍ଥ ମାନଙ୍କୁ ସନ୍ତୁଷ୍ଟ କଲାଭଳି କବିତା ସୃଷ୍ଟି କରିବାକୁ ବାଧ୍ୟ ହୁଏ କବି । କବିକୁ ସେଇଥିପାଇଁ ସବୁପ୍ରକାର ବନ୍ଧନରୁ ମୁକ୍ତ ରହିବାକୁ ଦରକାର ହୋଇପଡ଼େ । ସେଥିପାଇଁ ଯଦି ଇସରାଏଲ ଉପରକୁ ନଜର ଦିଆଯାଏ ତାହେଲେ ଦେଖାଯିବ ଯେ ଇସରାଏଲର ନୋବେଲ ପୁରସ୍କାର ବିଜେତା କବିଙ୍କ ବାସଭବନ ଦେଇ ଯାଇଥିବା ରାସ୍ତାରେ ଲେଖାଯାଇଛି ଆପଣମାନେ ଗଲାବେଳେ ଖୁବ୍ ସତର୍କରେ ଯାଆନ୍ତୁ । କାରଣ ଏଠାରେ କବିଙ୍କର ବାସଭବନ ଏବଂ ଆପଣଙ୍କ ଦ୍ୱାରା ତାଙ୍କର ଚିନ୍ତା ରାଜ୍ୟରେ କୌଣସି ବିଭ୍ରାଟ ନହୁଏ ସେପରି । କିନ୍ତୁ ଓଡ଼ିଶାର କବି ଯଦି ସରକାରୀ ଶାସନକଳର ପରିଚାଳକ ବା ମିଲ ମାଲିକ ଦ୍ୱାରା ଶୋଷଣ ଯନ୍ତ୍ରର ପରିଚାଳକ,

ହୁଏ ତା'ର ସ୍ୱାଧୀନ ଚିନ୍ତା ଉନ୍ନତିର ? ସେ ନିଶ୍ଚିତ ଭାବେ ଉପର ମହଲର ପ୍ରବୃତ୍ତିକ ସାଜ ଅନ୍ୟ ସ୍ଥାନ କରିବ । ତା ସେ କରିବ ଯେପରି ରାଜାମାନଙ୍କଠାରୁ ଅଶାନ୍ତର କବିମାନେ ପ୍ରଶସ୍ତି ଲେଖି ସୁନା ମୋହର ଆଦାୟ କରୁଥିଲେ । କିନ୍ତୁ ବର୍ତ୍ତମାନ ଲକ୍ଷ୍ୟ କରିବାର କଥା ଯେ ଓଡ଼ିଆ କବିତା କ୍ଷେତ୍ରରେ ଗଣଜୀବନ ଆଡ଼କୁ କେତେକ ତରୁଣ କବି ବିଶେଷ ଭାବେ ଢଳିଛନ୍ତି, ସେମାନେ ବୋଧହୁଏ ଗଣଜୀବନଠାରୁ ପ୍ରକୃତ ସ୍ୱୀକୃତି ପାଇବା ନିଷ୍ଠାରେ ଲେଖଣୀ ଚଳାଇଛନ୍ତି । ପାଠକ ଗୋଟାଏ ଦଶନ୍ଧି ଧରି ଓଡ଼ିଆ କବିତାର ଅଂଧକାର ଯୁଗରେ ବୁଡ଼ିରହି ଏମାନଙ୍କ ଆଡ଼କୁ ଦୃଷ୍ଟି ଫେରାଇ-ଲେଣି । ପଚାରୁଛନ୍ତି ଯେ ଏମାନେ କିଏ ? ଏମାନେ ଯାହା କହୁଛନ୍ତି ଠିକ୍ ସେହିପରିକି ଦିନେ ସଚିବାବୁ, ୧୯୩୭ ବେଳଠୁ କହିବାକୁ ଆରମ୍ଭ କରିଥିଲେ । ତାଙ୍କର ଅଭିଯାନ ପରେ କବିତା ୧୯୬୨ରେ ଗଣଜୀବନ ପ୍ରତି କ'ଣ ସେହିପରି ସେ ଦୃଷ୍ଟି ଦେଇ ପାରିଲେ । ସଚିବାବୁଙ୍କ ବିଫଳତାକୁ ବିଶ୍ୱଦର୍ଶନର ସରକାରୀ କଳରେ ଗୁମି ହୋଇଥିବା ସ୍ରଷ୍ଟାମାନେ ବାହାବାହା କଲେ କିନ୍ତୁ "Sachi Routray A poet of the People"ର କବର ନିଜ ହାତେ ହାତେ ସେ ଖୋଳିଲେ । ତା ପରେ ତାଙ୍କର ସ୍ଥିତି ହେଲା 'ସଚି ରାଉତରାୟ ବନାମ ରମାକାନ୍ତ ରଥ'' । ସଚି ରାଉତରାୟ, ଗୁରୁପ୍ରସାଦ, ରମାକାନ୍ତ ବା ସୀତାକାନ୍ତ ଗୋଷ୍ଠୀ ଦଶ ବର୍ଷରେ ଓଡ଼ିଆ କବିତାକୁ ପଛକୁ ନେଲେ କି ଆଗକୁ ନେଲେ ତାହା ଅତ୍ୟାଧୁନିକ ଉଗ୍ର ପରମ୍ପରାବାଦର ସମୂଳ ଉତ୍ପାଟନ ଚାହୁଁଥିବା ଅଗ୍ନିସ୍ନାନମାନଙ୍କ ଦୃଷ୍ଟିରେ ଜନଗଣର ବିଚାର ମଂଚକୁ ଦିନେ ଟଣାହୋଇ ଆସିବ । ପ୍ରତୀକବାଦୀଙ୍କ ଦୃଷ୍ଟିରେ ବା ଟଂକାର ସ୍କୁଲ ଅଫ୍ ପୋଏଟ୍ସ ଙ୍କ ଦୃଷ୍ଟିରେ ଓଡ଼ିଶାର ଆଂଗ୍ରିୟଂଗ ରୂପେ ପରିଚିତ ସେମାନଙ୍କର

ସାଧନାର ଧାରା ଆରମ୍ଭ ୧୯୬୫ ପରଠାରୁ । ଯେଉଁମାନେ ରବିସିଂଙ୍କୁ ଆଂଗ୍ରିୟଂଗ ବୋଲି ମୋହର ଦେଇଥିଲେ ସେ ମଧ୍ୟ ଏମାନଙ୍କ ଠାରୁ ପଛରେ ରହି ଗଲେଣି । ଏମାନଙ୍କୁ ମୋ ଦୃଷ୍ଟିରେ ର୍ୟାଡ଼କାଲୟଂଗ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ଏମାନଙ୍କ ଦୃଷ୍ଟି ପରି ବିଦ୍ରୋହୀର ଦୃଷ୍ଟି ନୁହେ । ଏମାନଙ୍କ ଆଖିରେ ରବିସିଂ ବିଦ୍ରୋହୀ । ସମାଜ ବ୍ୟବସ୍ଥା ଠାରୁ ଆରମ୍ଭ କରି ଓଡ଼ିଆ କବିତାରେ ପ୍ରତିଷ୍ଠା ଲାଭ କରିଥିବା ଜନଗଣ ସ୍ୱୀକୃତି ବିବର୍ଜିତ କବିତାର ବିରୁଦ୍ଧରେ ବିଦ୍ରୋହୀ ର୍ୟାଡ଼ିକାଲ ୟଂଗଙ୍କ ଦୃଷ୍ଟିରେ ଷାଠିଏ ପରର କବିତା କେତେକ ପଶ୍ଚିମା ପଦ୍ଧତିରେ ଉଚ୍ଚଶିକ୍ଷିତଙ୍କ ଦ୍ୱାରା ଆଦୃତ ସାଆନ୍ତିଆ ମନୋଭାବର କବିତା । ସେଇଥିପାଇଁ ପ୍ରୟୋଗବାଦୀମାନଙ୍କର ସ୍ୱର କ୍ରମେ କ୍ଷୀଣ ହୋଇ ଆସୁଛି । ଜନ ଚେତନାର ସମୀକ୍ଷା ହାତୁଡ଼ି ଉକ୍ତ ଶୈଳୀର ଅଣ୍ଟା ଭାଂଗି ଦେଉଛି । ଯେଉଁମାନେ ଇଲିୟଟ୍ ପ୍ରଥମ ମହାଯୁଦ୍ଧ ପର ସମାଜର ବିକଳାଙ୍ଗ ବିଶ୍ଳେଷଣ" ଏଜେରା ପାଉଣ୍ଡଙ୍କର 'ପ୍ରତୀକବାଦ' ବା ଥିଓଡ଼ରଙ୍କ ସାଂକେତିକ ଭାଷାର ପୂଜାରୀ ସେମାନଙ୍କୁ ଆମ ସମାଜ ଗ୍ରହୁଁନାହିଁ ବୋଲି ଉଗ୍ର ସମାଜବାଦୀ ତରୁଣମାନଙ୍କର ଦୃଢ଼ମତ । ଏ କ୍ଷେତ୍ରରେ ରବିସିଂ ମନମୋହନ ମିଶ୍ର, କିଛି ପରିମାଣରେ ସଫଳ । ସେମାନଙ୍କ ବିଦଗ୍ଧ ଆତ୍ମାର ସ୍ୱର ଭିତରୁ ସଂସ୍କାରଶୀଳ ଚେତନାର ଛଳଛଳ ଆତ୍ମପ୍ରକାଶ ପାଠକ ବିଦ୍ରୋହୀ କରିଛି । କିନ୍ତୁ ୬୫ ପରର "ର୍ୟାଡ଼ିକାଲ ୟଂଗ" ଯେଉଁମାନେ କି ସାଂପ୍ରତିକ ଧାରାର ବିରୁଦ୍ଧରେ କାବ୍ୟଯୁଦ୍ଧର ଜନକ ସେମାନଙ୍କର ସଂଖ୍ୟା ଆଂଗୁଠିରେ ଗଣି ହୋଇଗଲେ ବି ପ୍ରଚଳିତ ବୌଦ୍ଧିକ ସ୍ୱପ୍ନ ବିଳାସ, ପ୍ରୟୋଗବାଦର ଫାଙ୍କା ଆଓ୍ୱାଜର ମୁକାବିଲା ପାଇଁ ସମ୍ପୂର୍ଣ୍ଣ ପ୍ରସ୍ତୁତ । ବୋଧହୁଏ ଏଇ ର୍ୟାଡ଼ିକଲୟଂଗ ମାନଙ୍କ

ହିତରେ ଅଛନ୍ତି ବ୍ରଜନାଥ ରଥ, ହରେକୃଷ୍ଣ ଦାସ, ନିତ୍ୟାନନ୍ଦ ପତି, ବୈଷ୍ଣବଚରଣ ସାମଲ, ପ୍ରସନ୍ନକୁମାର ପାଟଶାଣୀ, ତ୍ରିଲୋଚନ ହୋଳ, ଅଶ୍ୱିନୀକୁମାର ମିଶ୍ର, ହୁସେନ ରବିଗାଂଧୀ, ହୁସେନ ଦେବଦାସ, ଶୁଭେନ୍ଦୁ ମୁଣ୍ଡ, ଈଶ୍ୱର ନାୟକ, ଅମୀପୁ ବସୁ, ବଂଶୀ ଧଳେଇ, ଈଶ୍ୱର ନାୟକ, ଅବଧୂତ ଓ ସଂଗମ ଗୋଷ୍ଠୀର କବିମାନେ । ଏମାନଙ୍କ ସମ୍ପର୍କରେ ଦିଲ୍ଲୀରୁ ପ୍ରକାଶିତ "LINK" ପତ୍ରିକାରେ ପ୍ରକାଶ ପାଇଥିବା ଜନୈକ ସମାଲୋଚକଙ୍କର ମତକୁ ଉଦ୍ଧାର କରାଯାଇ ପାରେ । "LINK"ରେ ପ୍ରକାଶିତ ମନ୍ତବ୍ୟ ଅନୁଯାୟୀ "The present world with its Social inlqualities and religious hypocrisaes must go.... "These poets fulfilled the demand of the hour because Marxism—Leninism had caught the imagination of the intelligentia." ଏହି କବିମାନଙ୍କୁ ର୍ୟାଡ଼ିକାଲ ୟଂଗ ବୋଲି ଅବହିତ କରିବା କେତେଦୂର ବାସ୍ତବ ତାହା 'LINK'ରେ ପ୍ରକାଶିତ ଅବଧୂତଗୋଷ୍ଠୀ ଉପରେ ଏକ ମନ୍ତବ୍ୟ ହେଉଛି —They seek to justify theire emergence by the representation of the revolutionary urge of man & his onward March through Man movements. They want to expose the nudity of the Society." ଏମାନେ ପ୍ରାୟତଃ ଜନଜୀବନ ଆଡ଼କୁ ନିଜକୁ ନିସର୍ଗ କରି ଦେଇଛନ୍ତି ··· । ପ୍ରସନ୍ନକୁମାର ପାଟଶାଣୀଙ୍କୁ Link ର ମନ୍ତବ୍ୟରେ କୁହାଯାଇଛି ଯେ Shri Prasanna kumar Patasani has kindled a new revolutionary fervour. His poetry has opned up new avenues in oriya literature by a mixture of charming realism and Materialistic phitosophy." ବୋଧହୁଏ ମନମୋହନ ମିଶ୍ରଙ୍କ କବିତା "Hiss song are famous for direct appeal to the Masses" ର ମନ୍ତ୍ରରୁ କିଛିଟା ଶିକ୍ଷା ପାଇଛନ୍ତି । ଏହି

ର୍ୟାଡ଼କାଲ ସ୍ତଂଭ ମାନେ ସଫଳ ସାମାଜିକ ଚିତ୍ର ଦେବାରେ ସମ୍ପୂର୍ଣ୍ଣ ବିଫଳ ଫ୍ରଏଡ଼ୀୟ ଦର୍ଶନର ପ୍ରଭାବ । ସତ ପାଣିଗ୍ରାହୀଙ୍କ ଆଧୁନିକତାର ଶୀକାର ବହୁ ତରୁଣ କବି, ଜ, ଝ, ଢ, ଅନାମ ଅବୁଝାର ଦେହବାଘ କବିଗୋଷ୍ଠୀମାନଂକ ଉପରେ ବ୍ରଜାଘାତର ବେଳ ଆସି ଯାଇଛି । ୧୯୭୨ ର ପ୍ରାକ୍ କାଳକୁ ବିଶେଷ କରି 'ଅବଧୂତ କବି' ଗୋଷ୍ଠୀଙ୍କର ଗୃହଲେଖାକୁ ଏମାନେ ଗ୍ରହଣ କରିବାକୁ ବାଧ ହୋଇଛନ୍ତି । 'ଅବଧୂତ ଗୋଷ୍ଠୀ' ନିୟାମକ ଅଖିଳପତି, ପ୍ରଜାପତି, ଅଗ୍ନିଶର୍ମା, ଅଗ୍ରଦୂତ ଇତ୍ୟାଦି ପାଞ୍ଚଜଣ ଗୃହାନ୍ତ । ଆମ ଅଙ୍ଗୀତର ଯାହାକିଛି ପରମ୍ପରା, ଯାହାକିଛି ଅଦର-କାରୀ, ସମାଜ ଦ୍ୱାରା ଗ୍ରହଣୀୟ ନୁହେଁ ତାର ବିରୁଦ୍ଧରେ ସ୍ୱୟଂ ସମ୍ପୂର୍ଣ୍ଣ କାବ୍ୟଯୁଦ୍ଧର ଘୋଷଣା" । ସେମାନଙ୍କ ସ୍ୱରରେ ଅଙ୍ଗୀତର ପରମ୍ପରାର ସମ୍ପୂର୍ଣ୍ଣ ବିଲୋପ ଓ ତାର ଉପାନ୍ତରେ ନୂତନର ଉଦୟ ଉତ୍ସବ ।

ସଚିବାବୁଙ୍କ କବିତା "ଲେଖିଅଛୁ କୂଳର ଅଂଗାରେ ଅଶ୍ଳୀଳ ଯୋନିର ନାମ ଗାଉଁଲୀ ଭାଷାରେ" ଠାରୁ ଗୁରୁପ୍ରସାଦଙ୍କ "ପ୍ରତିମା ନାୟକ ହସେ, ତା ଦେହରେ କଳାଶାଢ଼ୀ, ରୁକ ଆଉ ବ୍ରଣର ବିକାରେ ଦେଇ" ବିନୋଦ ନାୟକଙ୍କ ଠାରେ ରୁକ୍ଷ ବାହୁଲତା ଫାଙ୍କେ ପରିପୁଷ୍ଟ ସ୍ତନର ସୁସ୍ପଷ୍ଟ ଆଭାସେ ଗୁରୁ ନିତମ୍ବ ଆମନ୍ତ୍ରଣରେ ପରିଣତ ହୋଇଛି । ଗୋଟିଏ ଜାତିରେ ଚେତନାରେ ଗତ ଦଶବର୍ଷରେ ସଙ୍ଘଠିତ ହୋଇଛି ଉପରୋକ୍ତ ଯୌନ ଆବେ-ଦନର କୃତ୍ରିମ ଭାବାବେଗ, ଜାତିର ଚେତନା ରାଜ୍ୟରେ ଦୁର୍ଗତିର ପ୍ରତୀକ ହୋଇ କାବ୍ୟରେ ପ୍ରକାଶ ପାଇଛି ଏ ପ୍ରକାରର ଶହ ଶହ ଉଦାହରଣ । ତାଠାରୁ ଅଧିକ କରୁଣ ଓ ନଗ୍ନ ପରିଣତି ରୂପେ ପ୍ରକାଶ ପାଇଛି ଅନାମ କବିତାରେ ଯୁବକବିର ପରଭୃତରସନ୍ ବୋଧହୁଏ କୁମାର ମହାନ୍ତିଙ୍କ ଦ୍ୱାରା ଅଂଧକାରର ଶୀର୍ଷକୁ ଉଠିଛି । ସେ ତେଣୁ

ଗାଇଛନ୍ତି—ଶୀତ ଆସିଛି ଲେଳତ ଲଙ୍ଗରେ ବା ବ୍ରହ୍ମପୁରର ଅବୁଝା କଣ୍ଠରେ,ମୋ ସ୍ତ୍ରୀ ଶୋଇଛନ୍ତି ବସ୍‌ର କୋଳରେ" । ଏହା ହେଉଛି ଓଡ଼ିଆ କବିତାର ଗତ ଦଶବର୍ଷର ଡେଭଲପମେଣ୍ଟର ଗୋଟାଏ ମୋଟା ଅଂଶ" । ତାର ପ୍ରତିକ୍ରିୟା ଅବଧୂତମାନଙ୍କ ଦ୍ୱାରା ବେଶ୍ ସ୍ପଷ୍ଟ । ସେଥିପାଇଁ ଅଖିଳପତି ପ୍ରକାଶ କରିଛନ୍ତି କାଳ ଗୁଡ଼ି କାହିଁ ଶୋଇ ଶୋଇ କେବେ, ଯୁକ୍ତ ନିଷ୍ଠାର ମନ୍ତ୍ରସୂମ ଧର୍ମତନ୍ତ୍ରେ" । ଅଥବା "ମୁକ୍ତଶୀଳ ବଚନରେ ସଂଗ୍ରାମ ଆଣିଛି" ବୋଲି କହିବାରେ ଅଗ୍ନି ଶର୍ମାଙ୍କର ପ୍ରଚଳିତ ଧାରା ପ୍ରତି ସଂଗ୍ରାମର ଆହ୍ୱାନ । ଅବଧୂତ କବିତାରେ ସାଂପ୍ରତିକ ଓଡ଼ିଶାର ଚିତ୍ର ଦେବାରେ ଯେତେ ମାର୍ମିକ ଆବେଦନ ତା ହୁଏତ ଆଂଗ୍ଲି ସୃଂଗମାନଙ୍କର କବିତାରେ ଦେଖିବାକୁ ମିଳେ । ସେଥିପାଇଁ ଅବଧୂତ କୁହେ ସ୍କୁଲରେ ପଢ଼ୁଥିବା ପିଲାକୁ ପାଠ ଆସୁନି କାରଣ କ'ଣ ତାକୁ ସେକ କରୁଛି" ବା I am the herald Born to the sound of the Cracking of the skies, My boat is made of Steel."

ଷଷ୍ଠ ଦଶକ ହିଁ ଓଡ଼ିଆ କବିତାରେ ଅଂଧକାର ଯୁଗ ବୋଲି ମୋର ମତ । କିଂତୁ ସେଇ ଅନ୍ଧାର ଭିତରୁ କାବ୍ୟର ସୂର୍ଯ୍ୟର ଜନ୍ମ ଏବେ ଆସିଛି । ଓଡ଼ିଶାରେ ଦୁଇଟି ସ୍ୱତନ୍ତ୍ର କବିଗୋଷ୍ଠୀ ତିଆରି ଏହାର ଭିତରୁ ହୋଇଛି । ବୁଦ୍ଧିଜୀବୀମାନଙ୍କର ଏକ ମୋଟା ଅଂଶ ଜନଗଣ ଚେତନାକୁ ଭ୍ରୁକ୍ଷେପ ନକରି ସେମାନଙ୍କ ମନମୁଗ୍ଧ ସୌଖିନ ସାହିତ୍ୟ କରିବେ ଓ ଅନ୍ୟ ସିମୀତ ଅଂଶ ନିଜକୁ ସରକାରୀ କଳଠାରୁ ଦୂରରେ ରଖି ଜନଗଣ ପାଇଁ ସାହିତ୍ୟ ଲେଖିବେ । ତେଣୁ ଏଣିକି ଓଡ଼ିଆ କବିତା କ୍ଷେତ୍ରରେ ଦୁଇଟି ଧାରାର ସ୍ରୋତ ବହିବା ପ୍ରାୟ ଆରମ୍ଭ ହୋଇ ଗଲାଣି । ବିଶ୍ୱର ଜନଜୀବନରେ ଯେପରି ଥିଲାବାଲା ଓ ନଥିଲାବାଲାଙ୍କର ଧାରା ଏଠି ସେପରି ଥି... ବାଲାଙ୍କ ପାଇଁ ଲେଖିବେ ବେଶୀ । ସେଇମାନେ ଦଶବର୍ଷ ହେବ ଓଡ଼ିଶାର ପ୍ରଶ୍ନାତ୍ମକ ଯୁଗ ତିଆରି କଲେ । ଏଣିକି ବୋଧହୁଏ ସାଂପ୍ରତିକ ସ୍ୱର ଅନ୍ୟ ଦିଗକୁ ଚାଲିବାକୁ ଆରମ୍ଭ କରିବ ।

ଅରୁଣ ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସ୍ ବ୍ରହ୍ମପୁର-୨ (ଗଞ୍ଜାମ)